କାଳିଦାସଙ୍କ

# ଅକଲ କଥା

( ଦ୍ୱିତୀୟ ଭାଗ )

ଲେଖକ

ଶ୍ରୀ ବାସୁଦେବ ମହାପାତ୍ର, ବି. ଏ., ଡି. ଇଡ୍.



# କାଳିଦାସଙ୍କ ଅକଲ୍ କଥା

ଲେଖକ :

**ଶ୍ରୀ ବାସୁଦେବ ମହାପାତ୍ର**

ପ୍ରକାଶକ :

ସହଦେବ ପ୍ରଧାନ

**ଫ୍ରେଣ୍ଡସ୍ ପବ୍ଲିଶର୍ସ**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଚ୍ଛଦପଟ :

**ଉଦୟ ନାରାୟଣ ଜେନା**

ଦ୍ୱିତୀୟ ସଂସ୍କରଣ : **୧୯୯୮**

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ୍**

ଡାଗରପଡ଼ା, କଟକ-୨

ମୂଲ୍ୟ : **ଟ ୧୫**

# କଥାପଦେ

ପ୍ରାଚୀନ କାଳରେ ଭାରତରେ ସଂସ୍କୃତ ଭାଷା ଉନ୍ନତର ଶୀର୍ଷ ସ୍ଥାନରେ ପହଞ୍ଚିଥିଲା । ରାଜାମାନଙ୍କ ପୃଷ୍ଠପୋଷକତାରେ ବହୁ ପଣ୍ଡିତ ଓ କବି ଏହି ଭାଷାର ଶ୍ରୀବୃଦ୍ଧି ସାଧନ କରିଥିଲେ । ଏପରିକି ସେ ସମୟରେ ଭାରତର ଜନସାଧାରଣଙ୍କର କଥିତ ଭାଷା ଥିଲା ସଂସ୍କୃତ । ପ୍ରାଚୀନ କବି-ମାନଙ୍କ ମଧ୍ୟରେ କାଳିଦାସଙ୍କ ସ୍ଥାନ ଯେ ଅଗ୍ରଗଣ୍ୟ, ଏଥିରେ ସନ୍ଦେହ ପ୍ରକାଶ କରିବାର ଅବକାଶ ନାହିଁ । ସଂସ୍କୃତ ସାହିତ୍ୟକୁ ତାଙ୍କର ଅମର ଅବଦାନ ତାଙ୍କୁ ଚିରସ୍ମରଣୀୟ କରି ରଖିଥିବ । ତାଙ୍କ ରଚିତ 'ମେଘଦୂତ', 'କୁମାର ସମ୍ଭବ', 'ରଘୁବଂଶ', 'ଅଭିଜ୍ଞାନଂ ଶାକୁନ୍ତଳମ୍', 'ବିକ୍ରମୋର୍ବଶୀ', 'ନଳୋଦୟ' ଏବଂ 'ମାଳବିକାଗ୍ନିମିତ୍ର' ବିଶ୍ୱସାହିତ୍ୟର ଉଜ୍ଜ୍ୱଳ ରତ୍ନ ରୂପେ ଚିରକାଳ ଶୋଭା ପାଉଥିବ ।

କ୍ଷୋଭର ବିଷୟ ଯେ, ମହାକବି କାଳିଦାସଙ୍କ ଜୀବନକାହାଣୀ ସମ୍ବନ୍ଧରେ ଆଜିଯାଏ କୌଣସି ସ୍ପଷ୍ଟ ପ୍ରମାଣ ମିଳି ନାହିଁ । ଏହି ବିରାଟ ପ୍ରତିଭାଶାଳୀ କାଳିଦାସ କିଏ ? ଉଜ୍ଜୟିନୀ-ଅଧିପତି ବିକ୍ରମାଦିତ୍ୟଙ୍କ ନବରତ୍ନ-ସଭାର ଶ୍ରେଷ୍ଠ ରତ୍ନ, ନା ଧାରାଧିପତି ଭୋଜଙ୍କ ଶଂସ୍ୟ ସଭାକବି ! କଥିତ ଅଛି ଯେ, କାଳିଦାସ ଦୈବୀ ପ୍ରସାଦ ବଳରେ ଆକସ୍ମିକ ଭାବେ ଅଦ୍ଭୁତ କବିତ୍ୱ ଶକ୍ତିର ଅଧିକାରୀ ହୋଇଥିଲେ । ଏସବୁ ସତ୍ୟ କି ମିଥ୍ୟା କହିବା ସହଜ ନୁହେଁ । ତେବେ ତାଙ୍କ ବିଷୟରେ ଯେଉଁସବୁ ଜନଶ୍ରୁତି ଅଛି, ତାହାକୁ ସତ୍ୟ ବୋଲି ଧରିନେବା ଛଡ଼ା ଅନ୍ୟଗତି ନାହିଁ ।

ଏହି ପୁସ୍ତକଟିକୁ ଦୁଇଟି ଭାଗରେ ଛବିଶଟି ସୁନ୍ଦର ଚିତ୍ର ସହ ପ୍ରକାଶ କରାଗଲା । ବାଳକ ଓ ବାଳିକାମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ ହୋଇଥିଲେ ବି ଏହା ସାଧାରଣ ପାଠକ ପାଠିକାମାନଙ୍କର ସୁଖପାଠ୍ୟ ହେବ ବୋଲି ଆଶା କରାଯାଏ । ଏହି ଆଶା ସଫଳ ହେଲେ ଲେଖକର ଶ୍ରମ ସଫଳ ହେବ ।

**ଲେଖକ**

# ସୂଚିପତ୍ର





# ଦ୍ୱିତୀୟ ଭାଗ
# ରାଜାଙ୍କ ଅକଲ ଗୁଡ଼ୁମ୍

ଥରେ କୌଣସି କାରଣରୁ ରାଜା ଭୋଜ କାଳିଦାସଙ୍କ ଉପରେ ଭୀଷଣ ଭାବରେ ରାଗିଗଲେ । ସେ ଘାତକମାନଙ୍କୁ ଡାକି କହିଲେ—କାଳିଦାସଙ୍କୁ ବଣକୁ ନେଇ ହାଣିଦିଅ । ଆଜ୍ଞା ପାଇବାମାତ୍ରେ ଘାତକମାନେ କାଳିଦାସଙ୍କୁ ଧରି ବଣକୁ ନେଇଗଲେ । ସେଠାରେ ସେମାନେ ତାଙ୍କୁ କହିଲେ—"ବର୍ତ୍ତମାନ ତୁମର ଇଷ୍ଟ ଦେବତାଙ୍କୁ ସ୍ମରଣ କର, କାରଣ ଆମେ ତୁମକୁ ହାଣିଦେବୁ ।"

କାଳିଦାସ ଭାବିଲେ ରାଜା ରାଗରେ ଆଗପଛ କିଛି ନଭାବି ମୋତେ ପ୍ରାଣଦଣ୍ଡର ଆଦେଶ ଦେଇଛନ୍ତି । ତେଣୁ ଯେମିତି ହେଉ, ଜୀବନ ବଞ୍ଚାଇବା ଦରକାର । ସେ ଘାତକମାନଙ୍କୁ କହିଲେ—"ଭାଇମାନେ, ମୁଁ ଜଣେ ବ୍ରାହ୍ମଣ । ରାଜା ବିନା ଦୋଷରେ ମୋତେ ପ୍ରାଣଦଣ୍ଡର ଆଦେଶ ଦେଇଛନ୍ତି । ମୋତେ ହାଣିଦେଲେ ତୁମ୍ଭମାନଙ୍କୁ ନିଶ୍ଚୟ ବ୍ରହ୍ମହତ୍ୟା ଦୋଷ ଲାଗିବ । ତେଣୁ ମୋତେ ନ ମାରି ଛାଡ଼ିଦିଅ ।"

ଜଣେ ଘାତକ କହିଲା—"ତୁମକୁ ମାରିଲେ ବ୍ରହ୍ମହତ୍ୟା ପାପ ଲାଗିବ ବୋଲି କହୁଛ । ହେଲେ ତୁମକୁ ନ ମାରି ଛାଡ଼ିଦେଲେ ରାଜା ଆମର ମୁଣ୍ଡ ରଖିବେଟି ? ତୁମପାଇଁ ଆମ ସମସ୍ତଙ୍କର ମୁଣ୍ଡକାଟ ହେବ ।"

କାଳିଦାସ କହିଲେ—"ମୁଁ ମରିନାହିଁ ବୋଲି ଜାଣିଲେ ଯିନା ରାଜା ତୁମ୍ଭମାନଙ୍କୁ ଦଣ୍ଡ ଦେବେ । ତୁମେ ରାଜାଙ୍କୁ କହିଦେବ ଯେ ତୁମେ ମୋତେ ମାରିଦେଇଛ । ମୁଁ ପ୍ରତିଜ୍ଞା କରି କହୁଛି, ମୁଁ ଏହି ରାଜ୍ୟରେ ରହିବି ନାହିଁ । ଏଠାରୁ ଚାଲିଯାଇ ଦୂରଦେଶରେ ରହିବି । ତୁମ୍ଭେମାନେ

ମୋର ଏତିକ ଉପକାର କଲେ ଭଗବାନ ତୁମ୍ଭମାନଙ୍କର ମଙ୍ଗଳ କରିବେ ।"



[କାଳିଦାସଙ୍କୁ ମାରିବାକୁ ଘାତକମାନେ ନେଉଛନ୍ତି]

ଘାତକମାନେ କହିଲେ— "ତୁମକୁ ନମାରି ମାରିଛୁ ବୋଲି ରାଜାଙ୍କ ଆଗରେ ମିଛ କହିଲେ ଆମକୁ ପାପ ଲାଗିବ ନାହିଁ କି ?"

କାଳିଦାସ କହିଲେ—"ଯେଉଁ ଲୋକ ଅନ୍ୟର ପ୍ରାଣରକ୍ଷା କରିବାପାଇଁ ମିଛ କହେ, ତାହାକୁ ଆଦୌ ପାପ ଲାଗିବ ନାହିଁ ।"

କାଳିଦାସଙ୍କ କଥା ଶୁଣି ଘାତକମାନେ କୁହାକୁହି ହେଲେ—"କାଳିଦାସ ତ ଏ ରାଜ୍ୟକୁ ଆଉ କେବେ ଆସିବେ ନାହିଁ । ଆମେ ବୃଥାରେ କାହିଁକି ବ୍ରାହ୍ମଣଟାକୁ ମାରି ପାପର ବୋଝ ବୋହିବା ?"

ଶେଷରେ ଘାତକମାନେ ତାଙ୍କୁ ନମାରି ଛାଡ଼ିଦେଲେ । କାଳିଦାସ ସେଠାରୁ ବହୁ ଦୂର ରାଜ୍ୟକୁ ଚାଲିଗଲେ । ଏଣେ ଘାତକମାନେ ରାଜାଙ୍କୁ କହିଲେ ଯେ, ସେମାନେ କାଳିଦାସଙ୍କ ମୁଣ୍ଡ କାଟି ଦେଇଛନ୍ତି ।

ରାଜା ରାଗରେ ସିନା ପ୍ରାଣଦଣ୍ଡ ହୁକୁମ ଦେଇଦେଲେ; କିନ୍ତୁ ମନ ଟିକିଏ ଥଣ୍ଡା ପଡ଼ିବାରୁ ସେ ସବୁବେଳେ ଖାଲି କାଳିଦାସଙ୍କ କଥା ଭାବିବାକୁ ଲାଗିଲେ । ଖାଇବା ପିଇବା ବସିବା ଉଠିବା ସବୁ ସମୟରେ କାଳିଦାସଙ୍କ ରୂପ ତାଙ୍କ ମୁହଁ ଆଗରେ ନାଚିବାକୁ ଲାଗିଲା । ତାଙ୍କ ମନ ଏଣିକି ଆଉ ଥୟ ହୋଇ ରହିଲା ନାହିଁ । ସେ ପୁଣି ଭାବିଲେ, କାଳିଦାସଙ୍କ ପରି ବୁଦ୍ଧିମାନ ଲୋକକୁ ମାରିଦେବା ଏତେ ସହଜ କଥା ନୁହେଁ । ତାହାହେଲେ ସେ କ'ଣ ସତରେ ବଞ୍ଚିଛନ୍ତି ?

ରାଜା ସେହିକ୍ଷଣି କଟୁଆଳକୁ ଆଦେଶ ଦେଲେ—"ଯାଅ, ଘାତକମାନଙ୍କୁ ମୋ ପାଖରେ ହାଜର କରାଅ ।"

ଘାତକମାନେ ଆସିଲାରୁ ରାଜା ସେମାନଙ୍କୁ କହିଲେ— "ତୁମ୍ଭେମାନେ କାଳିଦାସଙ୍କୁ ମାରିଛ କି ନାହିଁ ସତ କରି କହ ।"

ସତ କଥା ଧରାପଡ଼ିଯାଇଛି ବୋଲି ଘାତକମାନେ ଡରିମରି କହିଲେ—"ହଜୁର ସତ କହୁଛୁ ଆମେ କାଳିଦାସଙ୍କୁ ମାରିଦେଇଛୁ ।"

ରାଜା କହିଲେ—"କାଳିଦାସ ସାଧାରଣ ଲୋକ ନୁହନ୍ତି । ସେ ମନ୍ତ୍ର ଜାଣିଛନ୍ତି । ତାଙ୍କୁ ତୁମେ କଦାପି ମାରିପାରିବ ନାହିଁ । ତୁମେ ତାଙ୍କୁ ଯଦି ମାରି ନାହଁ, ମୁଁ ତୁମ୍ଭମାନଙ୍କୁ ଦଣ୍ଡ ଦେବି ନାହିଁ । କିନ୍ତୁ ମିଛ କହିଲେ ତୁମ୍ଭମାନଙ୍କର ମୁଣ୍ଡକଟା ହେବ ।"

ଶେଷରେ ଆଉ ଉପାୟ ନଦେଖି ଘାତକମାନେ ରାଜାଙ୍କ ଆଗରେ ସତକଥା କହିଦେଲେ । ରାଜା ଖୁସିହୋଇ ସେମାନଙ୍କୁ ପୁରସ୍କାର ଦେଇ ବିଦା କଲେ ।

କାଳିଦାସ ବଞ୍ଚିଥିବା କଥା ସିନା ରାଜା ଜାଣିପାରିଲେ, କିନ୍ତୁ ସେ କେଉଁଠି ଅଛନ୍ତି ଜଣାଯିବ କିପରି ? କାଳିଦାସଙ୍କୁ ଖୋଜିବା ପାଇଁ ସେ ଅନେକ ଲୋକଙ୍କୁ ପଠାଇଲେ । କିନ୍ତୁ କେହିହେଲେ ତାଙ୍କର ପତ୍ତ ପାଇଲେ ନାହିଁ । ଶେଷରେ ରାଜା କାଳିଦାସଙ୍କ ଠିକଣା ଜାଣିବା ପାଇଁ ଗୋଟିଏ କୌଶଳ କଲେ । ସେ ତାଙ୍କ ରାଜ୍ୟରେ ଏବଂ ବାହାରେ ଘୋଷଣା କଲେ, ଯେଉଁ ଲୋକ ନୂଆ ଶ୍ଲୋକ ରଚନା କରି ତାଙ୍କୁ ଦେବ, ତାକୁ ସେ ଲକ୍ଷେ ସୁନା ମୋହର ପୁରସ୍କାର ଦେବେ ।

କଥାରେ ଅଛି — ହାତ୍ତ ବାଇଦ କୋଶେ, ତୁଣ୍ଡ ବାଇଦ ସହସ୍ର କୋଶ । ରାଜାଙ୍କର ଏହି ଘୋଷଣା ଦୂର ରାଜ୍ୟମାନଙ୍କରେ ବି ପହଞ୍ଚିଗଲା । ବହୁ ରାଜ୍ୟରୁ ପଣ୍ଡିତମାନେ ନୂଆ ନୂଆ ଶ୍ଲୋକ ନେଇ ଧାରାନଗରୀକୁ ଆସନ୍ତି, କିନ୍ତୁ ଭୋଜଙ୍କ ପଣ୍ଡିତମାନେ ସେସବୁ ପୁରୁଣା ବୋଲି କହିଦିଅନ୍ତି । ଫଳରେ ପଣ୍ଡିତମାନେ ଖାଲି ହାତରେ ମନଦୁଃଖରେ ନିଜ ରାଜ୍ୟକୁ ଫେରିଯାଉଥାନ୍ତି । ଭୋଜଙ୍କ ରାଜସଭାରେ ପାଠୀ, ଦ୍ୱିପାଠୀ, ତ୍ରିପାଠୀ ଆଦି ଶ୍ରୁତିଧର ପଣ୍ଡିତମାନେ ଥାନ୍ତି । ପାଠୀ ଯଦି ଥରେ କୌଣସି ଶ୍ଲୋକ ପଢ଼ିଦିଅନ୍ତି, ତେବେ ତାହା ତାଙ୍କର ମନେ ରହିଯାଏ । ତେଣୁ ତାହା ତାଙ୍କୁ ପୁରୁଣା ପରି ଲାଗେ । ଦ୍ୱିପାଠୀ ଥରେ ଶୁଣି ଆଉ ଥରେ ପଢ଼ିଲେ ଶ୍ଲୋକଟି ତାଙ୍କର ମନେରହିଯାଏ । ଏହିପରି ଯେତେ ନୂଆ ଶ୍ଲୋକ ଆସିଲେ ବି ପଣ୍ଡିତମାନେ ସେସବୁକୁ ପୁରୁଣା ବୋଲି କହିଦିଅନ୍ତି ।

ସେତେବେଳେ କାଳିଦାସ ଗୋଦାବରୀ ନଦୀ କୂଳରେ ଥିବା ପୈଠନ ସହରରେ ବାସ କରୁଥିଲେ । ସେହି ସହରର ଜଣେ ବ୍ରାହ୍ମଣ ଧନ ଆଶାରେ ବହୁଦିନ ଧରି ଚାଲି ଚାଲି ଧାରାନଗରୀରେ ପହଞ୍ଚିଲା । କିନ୍ତୁ ପଣ୍ଡିତମାନେ ତା'ର ଶ୍ଲୋକ ବି ପୁରୁଣା ବୋଲି କହିଲେ । ସେଥିପାଇଁ ସେ ମନ ଦୁଃଖରେ ନିଜ ରାଜ୍ୟରେ ପହଞ୍ଚିଲା । ଦିନେ ସେ କଥା ପ୍ରସଙ୍ଗରେ କାଳିଦାସଙ୍କୁ ଏକଥା କହିଲା । କାଳିଦାସ କହିଲେ— "ହଉ, ମୁଁ ଗୋଟିଏ ଶ୍ଲୋକ ଲେଖିଦେଉଛି । ଏହାକୁ ନେଇ ତୁମେ ଧାରାନଗରୀକୁ ଯାଅ; ତୁମେ ନିଶ୍ଚୟ ପୁରସ୍କାର ପାଇବ ।"

ବ୍ରାହ୍ମଣ ଧାରାନଗରୀକୁ ଆସି ରାଜସଭାରେ ଜଣାଇଲା—ମହାରାଜ, ମୁଁ ନୂଆ ଶ୍ଳୋକଟିଏ ଆଣିଛି । ଆଜ୍ଞା ଦେଲେ ଶୁଣାଇବି । ରାଜା ଆଦେଶ ଦେଲାରୁ ସେ ଶ୍ଳୋକଟି ପଢ଼ି ଶୁଣାଇଲା । ଶ୍ଳୋକଟିର ଅର୍ଥ ଏହି—

"ହେ ରାଜା ଭୋଜ, ତୁମର ବାପା ଜଣେ ଧାର୍ମିକ ଓ ସତ୍ୟବାଦୀ ରାଜା ଥିଲେ । ତାଙ୍କୁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ସମସ୍ତେ ଜାଣନ୍ତି । ସେ ମୋ'ଠାରୁ ଥରେ ଅନେଶ୍ୱତ କୋଟି ସୁନାମୋହର ଋଣ ନେଇଥିଲେ । କିନ୍ତୁ ସେ ଋଣ ପରିଶୋଧ ନକରି ମରିଗଲେ । ଏକଥା ଆପଣଙ୍କ ସଭାରୁ ସବୁ ପଣ୍ଡିତ ଜାଣିଛନ୍ତି । ଆପଣ ବାପାଙ୍କର ଯୋଗ୍ୟପୁତ୍ର । ତେଣୁ ମୋତେ ଅନେଶ୍ୱତ କୋଟି ସୁନାମୋହର ଦେଇ ପିତୃଋଣରୁ ମୁକ୍ତ ହୁଅନ୍ତୁ । ଯଦି ଆପଣଙ୍କର ପଣ୍ଡିତମାନେ ଏହା ଜାଣନ୍ତି ନାହିଁ ବୋଲି କହନ୍ତି, ତେବେ ଏହି ଶ୍ଳୋକକୁ ନୂଆ ମନେକରି ମୋତେ ଲକ୍ଷେ ମୋହର ପୁରସ୍କାର ଦିଅନ୍ତୁ ।"

ବ୍ରାହ୍ମଣର ଶ୍ଳୋକଟି ଶୁଣି କାହାରି ପାଟିରୁ କଥା ବାହାରିଲା ନାହିଁ । ଏମିତି କି ରାଜାଙ୍କ ଅକଲ ଗୁଡ୍ଡୁମ୍ ହୋଇଗଲା । ପଣ୍ଡିତମାନେ ଉଁ-ଚୁଁ ନକରି ଖାଲି ରାଜାଙ୍କ ମୁହଁକୁ ଅନାଉଥାନ୍ତି । ସେମାନେ ବଡ଼ ଅଡ଼ୁଆରେ ପଡ଼ିଲେ । ଶ୍ଳୋକ ପୁରୁଣା ବୋଲି କହିଲେ ଅନେଶ୍ୱତ କୋଟି ମୋହର ଦେବାକୁ ପଡ଼ିବ । ତେଣୁ ସେମାନେ ବାଧହୋଇ ତାହା ଏକ ନୂଆ ଶ୍ଳୋକ ବୋଲି କହିଲେ ।

ରାଜା ଭାବିଲେ, ଏମିତି ଶ୍ଳୋକ କାଳିଦାସଙ୍କ ଛଡ଼ା ଆଉ କେହି ରଚନା କରିପାରିବ ନାହିଁ । ତେଣୁ ସେ ବ୍ରାହ୍ମଣକୁ ପଚାରିଲେ—"ଏହି ଶ୍ଳୋକ ତୁମ ପାଇଁ କିଏ ଲେଖି ଦେଇଛି କହ ।" ବ୍ରାହ୍ମଣ ସବୁ କଥା କହିଦେଲା । ତହୁଁ ରାଜା ନିଜେ ସେହି ବ୍ରାହ୍ମଣ ସାଙ୍ଗରେ ସେଠିକୁ ସହରକୁ ଗଲେ । ସେଠାରେ କାଳିଦାସଙ୍କୁ ଦେଖି ତାଙ୍କର ମନ ଆନନ୍ଦରେ ନାଚିଉଠିଲା । ସେ ନିଜର ଭୁଲ୍ ପାଇଁ କାଳିଦାସଙ୍କୁ କ୍ଷମା ମାଗିଲେ ଏବଂ ତାଙ୍କୁ ଧାରାନଗରୀକୁ ଫେରି ଆସିଲେ ।

—୦—

# ଓଲଟା ପ୍ରଶ୍ନ

ଦିନେ ଭୋଜରାଜାଙ୍କ ସଭା ଭାରି ସରଗରମ ହୋଇଥାଏ । ଆଖ-ପାଖ ରାଜ୍ୟରୁ ଦଶଜଣ ବିଖ୍ୟାତ ପଣ୍ଡିତ ସଭାରେ ଉପସ୍ଥିତ ଥିଲେ । ନାନାପ୍ରକାର ଶାସ୍ତ୍ରଚର୍ଚ୍ଚା ଚାଲିଥାଏ । ଏତିକିବେଳେ ବାହାରୁ ଆସିଥିବା ଜଣେ ପଣ୍ଡିତ କହିଲେ—"ମହାରାଜ, ଅନୁମତି ଦେଲେ ମୁଁ ଆପଣଙ୍କ ପଣ୍ଡିତମାନଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି ।"

ରାଜା ଅନୁମତି ଦେବାରୁ ସେ ଗୋଟିଏ ଶ୍ଳୋକର ଶେଷ ପଦଟି କହିଲେ । ତାହାର ଓଡ଼ିଆ ଭାବାନୁବାଦ ଏହି—

କୃଷ୍ଣ ବିଭାହେଲେ ପାର୍ବତୀଙ୍କୁ ।

ପ୍ରଶ୍ନଟି ଯେପରି କୌତୁକିଆ, ସେହିପରି ଜଟିଳ ଥିଲା । ପାର୍ବତୀ ଶିବଙ୍କର ସ୍ତ୍ରୀ । ତାଙ୍କୁ କୃଷ୍ଣ ବିଭା ହେଲେ କିମିତି ? ପଣ୍ଡିତମାନେ କେହି କହିପାରିଲେ ନାହିଁ । ଏତେ ଏତେ ପଣ୍ଡିତ ଥାଇ ଯଦି ପ୍ରଶ୍ନର ଉତ୍ତର ଦେଇ ନପାରନ୍ତି, ତେବେ ସଭାକୁ ଅପମାନ ହେବ, ରାଜାଙ୍କୁ ବି ଅପମାନ ହେବ । ତେଣୁ କାଳିଦାସ ଯେତେବେଳେ ଦେଖିଲେ ଯେ, ସଭାର ସବୁ ପଣ୍ଡିତ ଚୁପ୍ ରହିଛନ୍ତି ସେ ଠିଆହୋଇ ଏକ ଶ୍ଳୋକ ଶୁଣାଇଲେ । ତାହାର ଓଡ଼ିଆ ଭାବାନୁବାଦ ଏହି—

କ୍ଷୀର ଖାଉ କିଏ ନେଲା ପରାଣ ?<br>
ଏକ ହୁଏ କେବେ ବେନି ଜୀବନ ?<br>
ଗିରିଜା ବୋଲନ୍ତି ଲୋକେ କାହାକୁ ?<br>
କୃଷ୍ଣ ବିଭା ହେଲେ ପାର୍ବତୀଙ୍କୁ ।

ଭାବାର୍ଥ—(୧) କ୍ଷୀର ଖାଉ ଖାଉ କିଏ ପ୍ରାଣ ନେଇଗଲା ? ଏହାର ଉତ୍ତର ହେଲା 'କୃଷ୍ଣ' । କାରଣ ପିଲାଦିନେ କୃଷ୍ଣ ପୁତନା ରାକ୍ଷସୀର କ୍ଷୀର ଶୋଷି ତାକୁ ମାରିଦେଲେ । (୨) ଦୁଇଟି ଜୀବନ

କେବେହେଲେ ଏକ ହୁଏ ? ଏହାର ଉତ୍ତର ହେଲା 'ବିଭାହେଲେ' । କାରଣ ବିବାହ ପରେ ସ୍ତ୍ରୀ ଓ ପୁରୁଷର ଜୀବନ ଏକ ହୋଇଯାଏ । (୩) ଲୋକମାନେ ଗିରିଜା ବୋଲି କାହାକୁ କହନ୍ତି ? ଏହାର ଉତ୍ତର ହେଲା 'ପାର୍ବତୀଙ୍କୁ' । କାରଣ ପାର୍ବତୀ ହିମାଳୟ ପର୍ବତ ବା ଗିରିଙ୍କ ଝିଅ ଥିଲେ । ଏହିପରି ତିନୋଟି ପ୍ରଶ୍ନର ଉତ୍ତରକୁ ମିଶାଇ ଦେଲେ ହେଉଛି 'କୃଷ୍ଣ ବିଭାହେଲେ ପାର୍ବତୀଙ୍କୁ' ।

ତାଙ୍କର ପ୍ରଶ୍ନର ଉପଯୁକ୍ତ ଉତ୍ତର ପାଇ ପଣ୍ଡିତେ କାଳିଦାସଙ୍କୁ ଧନ୍ୟବାଦ ଦେଲେ । ଏହାପରେ ଆଉ ଜଣେ ବିଦେଶୀ ପଣ୍ଡିତ ପ୍ରଶ୍ନକଲେ —

**କୁନ୍ତୀ ସୁତୋ ରାବଣ କୁମ୍ଭକର୍ଣ୍ଣୌ ।**

ଭାବାନୁବାଦ—

କୁନ୍ତୀ ପୁଅ ରାବଣ କୁମ୍ଭକର୍ଣ୍ଣ ।

ଭାବାର୍ଥ—

ରାବଣ ଓ କୁମ୍ଭକର୍ଣ୍ଣ କୁନ୍ତୀଙ୍କର ପୁଅ ।

ଭୋଜଙ୍କ ପଣ୍ଡିତମାନଙ୍କ ମଧ୍ୟରୁ କେହିହେଲେ ଏହି ପ୍ରଶ୍ନର ଉତ୍ତର ବି ଦେଇପାରିଲେ ନାହିଁ । ତେଣୁ କାଳିଦାସ ପୁଣି ଠିଆହୋଇ କହିଲେ —

**କା ପାଣ୍ଡୁ କାନ୍ତା ଗୃହଭୂଷଣଂ କଂ**
**କୋ ରାମଶତ୍ରୁଃ କମଗସ୍ତ୍ୟ ଜନ୍ମ**
**କାଃ ସୂର୍ଯ୍ୟପୁତ୍ରେ ବିପରୀତ ପୃଚ୍ଛା**
**କୁନ୍ତୀ ସୁତୋ ରାବଣ କୁମ୍ଭକର୍ଣ୍ଣୌ ।**

ଭାବାନୁବାଦ —

ପାଣ୍ଡୁଙ୍କ ଭାର୍ଯ୍ୟା କିଏ ଅଟନ୍ତି ?
କାହାଲାଗି ଘର-ଶୋଭା ବଢ଼ଇ ?

ହରିଲା କିଏ ସେ ରାମ-ଘରଣୀ ?
ଜନମିଲେ କାହୁଁ ଅଗସ୍ତି ମୁନି ?



[ କାଳିଦାସ ପଣ୍ଡିତମାନଙ୍କ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଉଛନ୍ତି ]

କେଉଁ ନର ଅଟେ ରବି ନନ୍ଦନ ?
କୁନ୍ତୀ ପୁଅ ରାବଣ କୁମ୍ଭକର୍ଣ୍ଣ ।

ଭାବାର୍ଥ—

(୧) ପାଣ୍ଡୁଙ୍କ ସ୍ତ୍ରୀ କିଏ ? ଉତ୍ତର—କୁନ୍ତୀ ।

(୨) ଘରର ଶୋଭା କାହାଯୋଗୁଁ ବଢ଼େ ? ଉତ୍ତର—ପୁଅ ।

(୩) ରାମଙ୍କ ସ୍ତ୍ରୀଙ୍କୁ କିଏ ଚୋରିକରି ନେଇଯାଇଥିଲା ?

ଉତ୍ତର—ରାବଣ ।

(୪) ଅଗସ୍ତି ମୁନି କେଉଁଥିରୁ ଜନ୍ମ ହୋଇଥିଲେ ?

ଉତ୍ତର—କୁମ୍ଭ (ମାଟିର କଳସ)

(୫) କେଉଁ ମନୁଷ୍ୟ ସୂର୍ଯ୍ୟଙ୍କର ପୁଅ ଥିଲେ ? ଉତ୍ତର—କର୍ଣ୍ଣ ।

ଏହି ପାଞ୍ଚଟି ପ୍ରଶ୍ନର ଉତ୍ତର ମିଶାଇ ଦେଲେ—କୁନ୍ତୀପୁଅ ରାବଣ କୁମ୍ଭକର୍ଣ୍ଣ ।

ଦୁଇଟି ଜଟିଳ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇ କାଳିଦାସ ରାଜସଭାର ଗୌରବ ରଖିଲେ । ବିଦେଶୀ ପଣ୍ଡିତମାନେ ତାଙ୍କର ପାଣ୍ଡିତ୍ୟ କଥା ଲୋକମୁହଁରୁ ଶୁଣିଥିଲେ । ଏବେ ତାଙ୍କର ଅସାଧାରଣ ବୁଦ୍ଧିର ପରିଚୟ ପାଇ ସେମାନେ କାଳିଦାସଙ୍କର ପ୍ରଶଂସା ଗାଇବାକୁ ଲାଗିଲେ । ଏହାପରେ କାଳିଦାସଙ୍କ ଯଶ ଫୁଲର ମହକ ପରି ଚାରିଆଡ଼େ ଛୁଟିଗଲା ।

—o—

# ଏହାକୁ ଚପୋଡ଼ି ପାଉଁଶ କରିଦିଅ

ଜଣେ ବ୍ରାହ୍ମଣ ଥିଲା । ସେ ସାମାନ୍ୟ କିଛି ପାଠ ପଢ଼ିଥିଲା । ହେଲେ ଭାରି ଗରିବ । ପିଲାଛୁଆଙ୍କୁ ପୋଷିବା ପାଇଁ ସେ ଖରା ବରଷା, ଶୀତ କାକରରେ ଭିକମାଗି ବୁଲେ । ତଥାପି ସେମାନେ ଓଳିଏ ଖାଇଲେ ଓଳିଏ ଉପାସ ରହୁଥିଲେ । ସେ ସମୟରେ ରାଜା ଭୋଜ ବ୍ରାହ୍ମଣମାନଙ୍କୁ ବହୁତ ଦାନ କରୁଥିଲେ । ଧାରାନଗରୀକୁ ଯାଇ ରାଜାଙ୍କଠାରୁ କିଛି ଧନ ମାଗି ଆଣିବା ପାଇଁ ମନେ ମନେ ବ୍ରାହ୍ମଣ ଠିକ୍ କଲା; କିନ୍ତୁ ଖାଲି ହାତରେ ବା କିପରି ରାଜାଙ୍କୁ ଦେଖା କରିବ ? କଥାରେ ଅଛି—

**ରିକ୍ତ ପାଣି ନ ପଶ୍ୟେଚ୍ଚ ରାଜନାଂ ଦେବତାଂ ଗୁରୁଂ**
**ଦୈବଜ୍ଞାଂ ଭିଷଜଂ ମିତ୍ରଂ ଫଳେନ ଫଳମାଦିଶେତ୍ ।**

ଭାବାନୁବାଦ—

ଖାଲି ହାତେ ଦେଖା ନ କରିବ ଗୁରୁ
ଦେବତା, ବଇଦ, ମିତ
ଜଉତିଷ, ରାଜା ଫଳ ଦେଇଥିଲେ
ପାଇବ ଫଳ ବହୁତ ।

ଭାବାର୍ଥ—ଗୁରୁ, ଦେବତା, ବଇଦ, ମିତ, ରାଜା ଏବଂ ଜଉତିଷ ଏମାନଙ୍କୁ କଦାପି ଖାଲି ହାତରେ ଦେଖା କରିବ ନାହିଁ, କିଛି ନା କିଛି ଭେଟି ନେଇଯିବ । କାରଣ ଫଳ ଦେଲେ ହିଁ ଫଳ ମିଳେ ।

ଗରିବ ବ୍ରାହ୍ମଣ ଘରେ କ'ଣ ଅଛି ଯେ ସେ ରାଜାଙ୍କ ପାଖକୁ ଧରି ଯିବ ? ସେ ଭାବିଲା, କିଛି ଖାଇବା ଜିନିଷ ଭେଟି ନେଇଯିବ । ସେ ତା'ର ପଡ଼ୋଶୀ ଘରୁ ଚାରି ଛ'ଖଣ୍ଡ ଆଖୁ ମାଗି ଆଣିଲା । ତାକୁ ଛୋଟ ଛୋଟ ଖଣ୍ଡକରି ତା'ର ଛିଣ୍ଡା ଗାମୁଛାରେ ବାନ୍ଧି ଧାରାନଗରୀକୁ ଗଲା ।

ସେ ରାଜସଭାରେ ପହଞ୍ଚି ଦେଖିଲା, ସଭା ଆରମ୍ଭ ହେବାକୁ ଆହୁରି ବହୁତ ସମୟ ବାକି ଅଛି । ସେ ଗୁଡ଼ାଏ ବାଟ ଚାଲି ଚାଲି ଥକିପଡ଼ିଥିଲା ।

ତେଣୁ ତା'ର ଗଣ୍ଠିଲିକୁ ମୁଣ୍ଡତଳେ ରଖି ସଭାଘରେ ଟିକିଏ ଶୋଇପଡ଼ିଲା । ଦେଖୁ ଦେଖୁ ସେ ଘଁ ଘଁ ଘୁଙ୍ଗୁଡ଼ି ମାରିଲା ।

ଏତିକିବେଳେ ଜଣେ ଲୋକ ମଜା ଦେଖିବା ପାଇଁ ତା'ର ମୁଣ୍ଡ ତଳୁ ଗଣ୍ଠିଲିଟି ଉଠାଇନେଇ ଅଙ୍ଗୁଠିକ ବାହାର କରିନେଲା । ତା'ପରେ ପୁଳାଏ କାଠ ତା' ଭିତରେ ପୂରାଇ ଗଣ୍ଠିଲିଟି ତା'ର ମୁଣ୍ଡତଳେ ପୁଣି ରଖିଦେଲା ।

ଯେତେବେଳେ ସଭାରେ ଲୋକ ଜମିଗଲେ, ପାଟିକୁଣ୍ଡ ଶୁଣି ବ୍ରାହ୍ମଣର ନିଦ ଋଙ୍କିକନା ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠି ତା'ର ଗଣ୍ଠିଲି ନେଇ ରଜାଙ୍କ ପାଖରେ ଖୋଲିଦେଲା । କିନ୍ତୁ ଏ କ'ଣ ? ତା' ଭିତରୁ ବାହାରିଲା ଖାଲି ପୁଳାଏ କାଠ । ଏହା ଦେଖି ସଭାର ଲୋକେ ହୋ-ହୋ କରି ହସିଉଠିଲେ । କାଠ ପୁଳାଏ ଭେଟି ଦେବାରୁ ରଜାଙ୍କ ରାଗ ଦେଖେ କିଏ ? ବିଚରା ବ୍ରାହ୍ମଣ ଦେହରେ ସେତେବେଳେ ଆଉ ଜୀବନ ନଥାଏ । ସେ ପାଟି ଆଁ କରି କୁଣ୍ଢେଇ ପରି ଠିଆ ହୋଇଥାଏ । ରଜାଙ୍କର ରାଗ ଓ ବ୍ରାହ୍ମଣର ଭୟ ଦେଖି କାଳିଦାସ ଆଉ ଚୁପ୍ ହୋଇ ରହିପାରିଲେ ନାହିଁ । ସେ ବ୍ରାହ୍ମଣକୁ ରକ୍ଷା କରିବା ପାଇଁ କହିଲେ— "ମହାରାଜ, ଏ ବ୍ରାହ୍ମଣ ଜଣେ ବଡ଼ ପଣ୍ଡିତ —ହେଲେ କ'ଣ ହେବ, ଘୋର ଗରିବ । ସେ ଆପଣଙ୍କୁ କାଠ ପୁଳାଏ ଭେଟି ଦେବାର ଅର୍ଥ ହେଉଛି ଏହି --

**ଦଗ୍ଧଂ ଖାଣ୍ଡବମର୍ଜ୍ଜୁନେନ ବଳିନା ରମ୍ୟ ଦ୍ରୁମୈର୍ଭୂଷିତୌ**
**ଦଗ୍ଧା ବାୟୁସୁତେନ ହେମନଗରୀ ଲଙ୍କା ପୁନଃ ସ୍ୱର୍ଣ୍ଣଭୂଃ**
**ଦଗ୍ଧୋ ଲୋକସୁଖୋ ହରେଣ ମଦନଃ କିଂ ତେନ ଯୁକ୍ତଂ କୃତଂ**
**ଦାରିଦ୍ର୍ୟଂ ଜନତାପକାରକମିଦଂ କେନାପି ଦଗ୍ଧଂ ନହି ।**

ଭାବାନୁବାଦ —

ଅରଜୁନ ଲାଗି ପାଉଁଶ ହୋଇଲା
କି ସୁନ୍ଦର ଆହା ଖାଣ୍ଡବ ବନ,
ପବନର ପୁଅ ବୀର ହନୁମାନ
କଲା ସୁନାପୁରୀ ଲଙ୍କା ଦହନ ।

ଶିବଙ୍କ କୋପରେ ଜଳିଲା ମଦନ,
କି ପାଇଲେ ଏଥିଁ ଜଗତ ଜନ ?
ଦରିଦ୍ରତା ସିନା ପୀଡ଼଼଼ଇ ସରବେ,
ଏ କାଠେ ତାହାକୁ ଜାଳ, ରାଜନ ।

ଭାବାର୍ଥ—ଅର୍ଜୁନଙ୍କ ଯୋଗୁଁ ଏତେ ସୁନ୍ଦର ଖାଣ୍ଡବ ବନ ଜଳିପୋଡ଼ି ପାଉଁଶ ହୋଇଗଲା । ପବନପୁଅ ହନୁମାନ ସୁନାପୁରୀ ଲଙ୍କାକୁ ପୋଡ଼ି ଛାରଖାର କରିଦେଲେ । ଶିବ ରାଗରେ ମଦନକୁ ପୋଡ଼ି ଦେଇଥିଲେ । ହେଲେ, ଏହାଦ୍ୱାରା ସେମାନଙ୍କର କି ଯଶ ରହିଲା ? ଦୁନିଆର ଲୋକଙ୍କର ବା ଏହାଦ୍ୱାରା କି ଉପକାର ହେଲା ? କିନ୍ତୁ ଧନର ଅଭାବ ସବୁ ମଣିଷକୁ ପୀଡ଼ାଦିଏ । ହେ ରାଜା ! ଏଇ କାଠରେ ଦରିଦ୍ରତାକୁ ପୋଡ଼ି ପାଉଁଶ କରିଦିଅ । ଅର୍ଥାତ୍ ମୋତେ ଧନ ଦେଇ ମୋର ଦରିଦ୍ରତା ଦୂରକର । ଏପରି କଲେ ତୁମର ଯଶ ବଢ଼ିବ, ଆଉ ମୋର ବି ଉପକାର ହେବ ।

କାଳିଦାସଙ୍କ କଥା ଶୁଣି ରାଜା ଭାରି ଖୁସି ହେଲେ । ସେ ସାଙ୍ଗେ ସାଙ୍ଗେ ତାଙ୍କର ଭଣ୍ଡାର-ରକ୍ଷକକୁ କହିଲେ—ଏହି ବ୍ରାହ୍ମଣଙ୍କୁ ଦଶହଜାର ଟଙ୍କା ଦିଅ ।

ବ୍ରାହ୍ମଣ ଟଙ୍କା ପାଇ ଭାରି ଖୁସି ହେଲା । ସେ ରାଜାଙ୍କୁ ବହୁତ ପ୍ରଶଂସା କଲା । ରାଜାଙ୍କଠାରୁ ବିଦାୟ ନେଇ ଗଲାବେଳେ ବ୍ରାହ୍ମଣ ଦୁଇ ତିନିଥର ପଛକୁ ବୁଲି ଚାହିଁଲା । ଏଥିରେ ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ତୁମେ ଏମିତି ଥରକୁ ଥର ପଛକୁ ଚାହୁଁଛ କାହିଁକି ?"

ବ୍ରାହ୍ମଣ କହିଲା—"ମହାରାଜ, ଦରିଦ୍ରତା ଆଜିଯାଏ ମୋର ପଛେ ପଛେ ଲାଗି ରହିଥିଲା । ଏବେ ଆପଣ ତାକୁ ନାଶ କରିଦେଲେ । ତଥାପି ମୋର ଭୟ ହେଉଛି, ସେ ପୁଣି ଜୀବନ ପାଇ ମୋ ପଛରେ ଗୋଡ଼ାଉଛି କି ? ସେଥିପାଇଁ ମୁଁ ଟିକିଏ ପଛକୁ ଚାହିଁଦେଲି ।"

ରାଜା ବ୍ରାହ୍ମଣ କଥାରେ ଖୁସି ହୋଇ ତାକୁ ପୁଣି ଦଶହଜାର ଟଙ୍କା ପୁରସ୍କାର ଦେଲେ । ସେହିଦିନଠାରୁ ବ୍ରାହ୍ମଣ ସୁଖରେ ଚଳିଲା ।

[ଦରିଦ୍ର ବ୍ରାହ୍ମଣକୁ ରାଜାଙ୍କ ଅର୍ଥ ସାହାଯ୍ୟ]



# ହୀରା ଚୋର ଧରାପଡ଼ିଲା

ଦିନେ ଭୋଜରାଜା ସଭାରେ ବସିଛନ୍ତି, ଏତିକିବେଳେ ଜଗୁଆଳି ଆସି ଜଣାଇଲା – "ମହିମା, ଚାରିଜଣ ଯୁବକ ଆପଣଙ୍କୁ ଦେଖା କରିବାକୁ ଚାହୁଁଛନ୍ତି । ସେମାନେ ବଡ଼ଘର ପୁଅପରି ଦିଶୁଛନ୍ତି । ଆପଣଙ୍କର ଆଦେଶ ପାଇଲେ, ମୁଁ ସେମାନଙ୍କୁ ଏଠାକୁ ନେଇଆସିବି ।"

ରାଜା ସେମାନଙ୍କୁ ଭିତରକୁ ନେଇ ଆସିବାକୁ କହିଲେ । ତହୁଁ ଜଗୁଆଳି ସେମାନଙ୍କୁ ରାଜାଙ୍କ ନିକଟକୁ ନେଇଆସିଲେ । ଚାରି ଯୁବକ ରାଜାଙ୍କୁ ପ୍ରଣାମ କଲେ । ରାଜା ସେମାନଙ୍କୁ ବସିବାକୁ କହିଲେ । କିନ୍ତୁ ସେମାନେ ନବସି କହିଲେ—"ମହାରାଜ, ଆମ୍ଭେମାନେ ଏକ ଜରୁରୀ ବିଷୟ ନେଇ ଆପଣଙ୍କ ନିକଟକୁ ଆସିଅଛୁ । ଯଦି ଆପଣ ଆମ୍ଭମାନଙ୍କୁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେବେ, ଆମେ ଏଠାରେ ବସିବୁ; ନଚେତ୍ ଆମ୍ଭେମାନେ ଚାଲିଯିବୁ ।"

ରାଜା ସେମାନଙ୍କୁ ସାହାଯ୍ୟ କରିବାପାଇଁ ରାଜି ହେଲେ । ତହୁଁ ଜଣେ ଯୁବକ କହିଲା ମହାରାଜ, ଆମେ ଚାରିଜଣ ରାଜପୁଅ, ଚାରିଭାଇ । ଆମ ବାପା ମରିବା ଆଗରୁ ରାଜ୍ୟକୁ ଆମ୍ଭମାନଙ୍କ ଭିତରେ ସମାନ ଚାରି-ଭାଗରେ ବାଣ୍ଟି ଦେଇଥିଲେ । ଭଣ୍ଡାରଘରେ ଅତି ମୂଲ୍ୟବାନ୍ ହୀରା ଚାରିଖଣ୍ଡ ଥିଲା । ସେ କହିଥିଲେ ଯେ, ତାଙ୍କର ମୃତ୍ୟୁ ପରେ ଆମ୍ଭେମାନେ ପ୍ରତ୍ୟେକେ ଗୋଟିଏ ଲେଖାଁ ହୀରାଖଣ୍ଡ ବାଣ୍ଟିନେବୁ । ଭଣ୍ଡାରଘର ଚାବି ଆମ ଚାରିଭାଇଙ୍କ ପାଖରେ ଥିଲା । ଏ କଥା ଆମଛଡ଼ା ଆଉ କେହି ଜାଣନ୍ତି ନାହିଁ ।

ଯେତେବେଳେ ବାପା ମରିଗଲେ, ଆମେ ଚାରିଭାଇ ଭଣ୍ଡାରଘର ଖୋଲି ଦେଖିଲୁ ଯେ ସବୁ ଅଛି, କେବଳ ହୀରା ଚାରିଖଣ୍ଡ ନାହିଁ । ଆମେ ମନେକଲୁ ତାହା ନିଶ୍ଚୟ ଚୋରି ହୋଇଯାଇଛି । କିନ୍ତୁ ବାହାରର

ଚୋରର ଆସି ଭଣ୍ଡାରରୁ ତାହା ନେବ ବା କମିତ ? ଭଣ୍ଡାରଘରେ ସିନ୍ଧ ଖୋଳା ହୋଇନାହିଁ ବା ଦୁଆରର ତାଲ ଭଙ୍ଗା ହୋଇନାହିଁ । ତେଣୁ, ଆମ୍ଭମାନଙ୍କର ପରସ୍ପର ଉପରେ ସନ୍ଦେହ ହେଉଛି । ମହାରାଜ, ଆମ୍ଭମାନଙ୍କର ଅନୁରୋଧ ଯେ, ଆମ୍ଭେମାନେ ଯେପରି ଘରକୁ ଫେରି ପାରିବୁ, ଆପଣ ତା'ର ବ୍ୟବସ୍ଥା କରନ୍ତୁ । କିନ୍ତୁ ଚୋର ବିଷୟ ଅନୁସନ୍ଧାନ କରିବା ଆଗରୁ ଆପଣଙ୍କୁ ଆମେ ଏହି ତିନୋଟି ଅନୁରୋଧ କରୁଅଛୁଁ—

(୧) ଆମ ଗୁରୁଭାଇଙ୍କୁ କୌଣସି ପ୍ରଶ୍ନ ପଚାରିବେ ନାହିଁ, (୨) ଆମ୍ଭମାନଙ୍କୁ ଦଣ୍ଡ ବା ଧମକ ଦେବେ ନାହିଁ, (୩) ଯାହାଠାରୁ ଚୋରିମାଲ ବାହାରିବ, ତା'ର ନାମ ଆମ୍ଭମାନଙ୍କୁ ବା ଅନ୍ୟ କାହାକୁ କହିବେ ନାହିଁ ।

ଏହା ଶୁଣି ରାଜା କହିଲେ—"ହଉ, ତୁମେମାନେ ଆଠଦିନ ଧାରାନଗରୀରେ ରହ । ମୁଁ ଚୋରିମାଲ ବାହାର କରିବାର ବ୍ୟବସ୍ଥା କରିବି ।"

ଏହାପରେ ରାଜା ସେମାନଙ୍କୁ ବସାଘର ଦେଇ ଖିଆପିଆର ସୁବିଧା କରିଦେଲେ । ରାଜପୁଅମାନେ ସେଠାରୁ ଚାଲିଯିବା ପରେ ରାଜା ତାଙ୍କର ପାଟମନ୍ତ୍ରୀ ବୁଦ୍ଧିସାଗରଙ୍କୁ କହିଲେ—"ଏହି ଚୋର ଧରିବା ଭାର ତୁମ ଉପରେ ରହିଲା । ତୁମକୁ କେମିତିକେମିତି କୌଣସିମତେ ଆଠଦିନ ଭିତରେ ଚୋରିମାଲ ବାହାର କରିବାକୁ ପଡ଼ିବ ।"

ଏ ତ ସାଧାରଣ ଚୋରି ନୁହେଁ । ଚୋର କମିତ ଧରାପଡ଼ିବ, ବୁଦ୍ଧିସାଗର କିଛି ବୁଝିପାରିଲେ ନାହିଁ । ଏହିକଥା ଭାବି ଭାବି ରାତସାରା ତାଙ୍କୁ ମୋଟେ ନିଦ ହେଲାନି । ସେ ସକାଳୁ ଉଠି କାଳିଦାସଙ୍କ ଘରକୁ ଗଲେ । ସେ କାଳିଦାସଙ୍କୁ ସବୁକଥା ବୁଝାଇ କହିଲେ । ଶେଷରେ କହିଲେ—"ପଣ୍ଡିତ ମହାଶୟ, ଆପଣଙ୍କ ଛଡ଼ା ଏ କାମ ଆଉ କେହି କରିପାରିବେ ନାହିଁ ।"

କାଳିଦାସ କହିଲେ—"ଅଚ୍ଛା, ମୁଁ ଚେଷ୍ଟା କରିବି । କିନ୍ତୁ ତୁମ ପୁଅ ବିଦ୍ୟାସାଗରକୁ ମୋ ପାଖକୁ ପଠାଇ ଦେବ । ସେ ମୋତେ ଏ

କାମରେ ସାହାଯ୍ୟ କରିବ । ଆପଣ ଗୁରୁ ରାଜାପୁଅଙ୍କୁ ଅଲଗା ଅଲଗା ବସାଘର ଦିଅନ୍ତୁ, ଯେପରି ସେମାନେ ଏହି ଆଠଦିନ ପରସ୍ପରକୁ ଦେଖିପାରିବେ ନାହିଁ ।"

କାଳିଦାସଙ୍କ କଥା ଅନୁସାରେ ବୁଦ୍ଧିସାଗର ଗୁରୁ ରାଜାପୁଅଙ୍କୁ ଅଲଗା ଅଲଗା ସ୍ଥାନରେ ରଖାଇଦେଲେ । ତା'ପରେ ସେ ଘରକୁ ଯାଇ ପୁଅକୁ କାଳିଦାସଙ୍କ ପାଖକୁ ପଠାଇଦେଲେ ।

କାଳିଦାସ ବିଦ୍ୟାସାଗରଙ୍କୁ କହିଲେ - "ତୁମେ ତ ଭଲ ପଶାଖେଳ ଜାଣ । ମୁଁ ଯେପରି କହିବି, ତୁମେ ରାଜାପୁଅଙ୍କ ସହିତ ସେହିପରି ପଶା ଖେଳିବ । ମୁଁ ସବୁବେଳେ ତୁମ ପାଖରେ ଥାଇ ତୁମକୁ କ'ଣ କରିବାକୁ ହେବ କହୁଥିବି ।"

ସେଦିନ କାଳିଦାସ ଓ ବିଦ୍ୟାସାଗର ବଡ଼ ରାଜାପୁଅଙ୍କୁ ସାକ୍ଷାତ କରିବାକୁ ଗଲେ । ସେମାନେ ରାଜାପୁଅ ସହିତ ଭାରି ହସଖୁସିରେ କଥାଭାଷା କଲେ । କାଳିଦାସ ନିଜକୁ ଜଣେ ବିଦେଶୀ ଲୋକ ବୋଲି ପରିଚୟ ଦେଲେ । ପଶାଖେଳ କଥା ପଡ଼ିଲା । କାଳିଦାସ ବିଦ୍ୟାସାଗରଙ୍କୁ ଦେଖାଇ କହିଲେ—"ଏ ଭଦ୍ରଲୋକ ଚମତ୍କାର ପଶାଖେଳ ଜାଣନ୍ତି । ତେଣୁ ଲୋକେ ଏହାଙ୍କୁ ଓସ୍ତାଦ୍ ବୋଲି କହନ୍ତି ।"

ରାଜାପୁଅମାନଙ୍କର ତ ପଶାଖେଳରେ ଭାରି ଝୁଙ୍କ୍ । ତେଣୁ ରାଜାପୁଅ କହିଲା—"ଆଚ୍ଛା, ଟିକିଏ ବସ, ଦି' ବାଜି ପଶା ଖେଳିବା ।"

କିନ୍ତୁ କାଳିଦାସ ଓ ବିଦ୍ୟାସାଗର କାମର ବାହାନା ଦେଖାଇ ଚାଲିଗଲେ । ସେମାନେ ରାତିରେ ଆସି ଖେଳିବେ ବୋଲି କହିଲେ । ସନ୍ଧ୍ୟା ହେଲାରୁ ରାଜାପୁଅ ସେମାନଙ୍କ ବାଟକୁ ଚାହିଁରହିଲା । କିନ୍ତୁ ସେମାନେ ସେଦିନ ନଆସି ତା' ପରଦିନ ରାତିରେ ଆସିଲେ । ସେମାନଙ୍କୁ ଦେଖି ରାଜାପୁଅ ଭାରି ଖୁସିହେଲା । ପଶାଖେଳ ଚାଲିଲା । ପ୍ରଥମେ ପ୍ରଥମେ ବିଦ୍ୟାସାଗର ଜିଣିଲା । କିନ୍ତୁ କାଳିଦାସ ଏତିକିବେଳେ ବିଦ୍ୟାସାଗରଙ୍କୁ ଚାହିଁଦେଲେ । ତେଣୁ ବିଦ୍ୟାସାଗର ରାଜାପୁଅକୁ ଜିଣାଇବା ପାଇଁ ଚେଷ୍ଟାକଲା । ଦେଖୁ ଦେଖୁ ରାଜାପୁଅ ଜିଣିବାକୁ ଲାଗିଲା ଏବଂ ବିଦ୍ୟାସାଗର ହାରିବାକୁ ଲାଗିଲା ।

ଏତିକିବେଳେ କାଳିଦାସ ଦୀପର ସଳିତାକୁ ଟେକିଲା ପରି ବାହାନା କଲେ । ଏମିତି କରୁ କରୁ ସେ ଦୀପଟି ଲିଭାଇ ଦେଲେ । ଘରଭିତର ଅନ୍ଧାର ହୋଇଗଲା । ସେତେବେଳେ ରାଜାପୁଅର ଜିଣାପନ୍ତ । ଅନ୍ଧାର ହୋଇଯିବାରୁ ସେ ଭାରି ବ୍ୟସ୍ତହେଲା । ସେ ବାହାରକୁ ଯାଇ ଦୀପ ଲଗାଇ ଆଣିବାକୁ ପହରାବାଲାକୁ କହିଲା । କିନ୍ତୁ କାଳିଦାସ ଆଗରୁ ପହରାବାଲାକୁ କହିଥିଲେ ଯେ, ରାଜାପୁଅମାନେ ରାତିରେ ଆଲୁଅ ମାଗିଲେ ଦେବ ନାହିଁ । ତେଣୁ ପହରାବାଲା ରାଜାପୁଅକୁ ଆଲୁଅ ନାହିଁ ବୋଲି କହିଲା । ରାଜାପୁଅ ମନଦୁଃଖରେ ଘରଭିତରକୁ ଫେରିଆସିଲା ।

କାଳିଦାସ ଓ ବିଦ୍ୟାସାଗର ଉଠି ଠିଆହେଲେ । ଯିବା ପୂର୍ବରୁ ବିଦ୍ୟାସାଗର ରାଜାପୁଅକୁ କହିଲା—"ହଉ, ଆଜି ଏତିକିରେ ଥାଉ, କାଲି ପୁଣି ଖେଳିବା ।"

ତା' ପରଦିନ ରାତିରେ କାଳିଦାସ ବିଦ୍ୟାସାଗରକୁ ସାଙ୍ଗରେ ନେଇ ବଡ଼ ମଝିଆ ରାଜାପୁଅ ପାଖକୁ ଗଲେ । ସେଠାରେ ବି ପଶାଖେଳିବା ସମୟରେ କାଳିଦାସ ଦୀପଟି ଲିଭାଇ ଦେଲେ । ଆଲୁଅ ଆଣିବା ପାଇଁ ରାଜାପୁଅ ଚେଷ୍ଟା କଲା, କିନ୍ତୁ ପାଇଲା ନାହିଁ । ତେଣୁ ସେ ବାଧହୋଇ ପଶାଖେଳ ବନ୍ଦ କଲା । ତା' ପର ରାତି ସାନ ମଝିଆ ପୁଅ ପାଖକୁ ଯାଇ ବି ଠିକ୍ ସେହିପରି କଲେ । କିନ୍ତୁ ତା' ପାଖରୁ ବି ଚୋର ବିଷୟରେ କିଛି ଖୋଜ ଖବର ପାଇଲେ ନାହିଁ ।

ଶେଷରେ ସେମାନେ ସାନ ରାଜାପୁଅର ବସାକୁ ଗଲେ । ବିଦ୍ୟାସାଗର ରାଜାପୁଅ ସହିତ ପଶାଖେଳ ବସିଲା । ଠିକ୍ ଯେତିକିବେଳେ ରାଜାପୁଅ ଜିଣୁଥିଲା, କାଳିଦାସ ଜାଣିଶୁଣି ଦୀପଟି ଲିଭାଇଦେଲେ । ରାଜାପୁଅ ଭାରି ବ୍ୟସ୍ତ ହେଲା । ସେ ଦୀପ ଲଗାଇ ଆଣିବାକୁ ପହରାବାଲାକୁ କହିଲା । କିନ୍ତୁ ପହରାବାଲା କହିଲା ଯେ, ସେ ସ୍ଥାନ ଛାଡ଼ି ଯାଇପାରିବ ନାହିଁ ।

ବିଦ୍ୟାସାଗର ରାଜାପୁଅକୁ କହିଲା--"ଆଜ୍ଞା, ଖେଳ ଆଜି ଏତିକିରେ ବନ୍ଦ ଥାଉ, କାଲି ପୁଣି ଖେଳିବା ।"

ରାଜାପୁଅ କହିଲା- "ନା, ତୁମେ ଏଠି ଟିକିଏ ବସ । ମୁଁ ଗୋଟିଏ ଉପାୟ କରୁଛି ।"

ଏହା କହି ସେ ପାଖ ଘର ଭିତରକୁ ଯାଇ ଗୋଟିଏ ପେଟରା ଖୋଲି କ'ଣ ଗୋଟାଏ ଜିନିଷ ବାହାର କଲା । ତା'ପରେ ସେ ଖେଳିବା ଜାଗାକୁ ଆସି ଖଣ୍ଡିଏ ହୀରା ତଳେ ଥୋଇଦେଲା । ସେହି ହୀରାର ତେଜରେ ଘରଟା ଆଲୁଅ ହୋଇଗଲା । ଏହା ଦେଖି କାଳିଦାସ ବୁଝିଲେ ଯେ, ସାନ ରାଜାପୁଅ ହିଁ ହୀରା ଚୋରିଖଣ୍ଡ ଚୋରି କରି ନିଜ ପାଖରେ ରଖିଛି । ସେଦିନ ଖେଳ ସରୁ ସରୁ ଅଧରାତି ହୋଇଯାଇଥିଲା । ବିଦ୍ୟାସାଗର ଓ କାଳିଦାସ ରାଜାପୁଅଠାରୁ ବିଦାୟ ନେଇ ଘରକୁ ଗଲେ । ଗଲାବେଳେ ରାଜାପୁଅ ସେମାନଙ୍କୁ ପୁଣି ତା' ପରଦିନ ଆସିବାକୁ କହିଲା ।

ତା'ପର ରାତିରେ କାଳିଦାସ ସାନ ରାଜାପୁଅ ପାଇଁ ପାନ ନେଇଗଲେ । ସେ ପାନରେ ନିଶା ଜିନିଷ ପକାଇ ଦେଇଥିଲେ । ପଶାଖେଳିଲାବେଳେ ସେ ରାଜାପୁଅ ହାତକୁ ଖଣ୍ଡ ପରେ ଖଣ୍ଡ ପାନ ବଢ଼ାଇ ଦେଉଥାନ୍ତି । ତିନି ଚାରିଖଣ୍ଡ ପାନ ଖାଇସାରିଲା ପରେ ରାଜାପୁଅ ଅଚେତ ହୋଇ ତଳେ ପଡ଼ିଗଲା । ଏହି ସୁଯୋଗ ପାଇ କାଳିଦାସ ଓ ବିଦ୍ୟାସାଗର ରାଜାପୁଅର ପେଟରା ଖୋଲି ହୀରା ଚାରିଟି ନେଇ ଚମ୍ପଟ କଲେ ।

ସକାଳେ ଟିକିଏ ଡେରିରେ ରାଜାପୁଅର ନିଦ ଭାଙ୍ଗିଲା । ସେ ଦେଖିଲା ତଳେ ଦରି ବିଛାଯାଇଛି ଆଉ ପଶାକାଠି ସବୁ ତା' ଉପରେ ପଡ଼ିଛି । ଗତ ରାତିର ପଶାଖେଳ କଥା ତା'ର ମନେପଡ଼ିଲା । ତା'ର ମନରେ କାହିଁକି ଟିକିଏ ସନ୍ଦେହ ହେଲା । ସେ ତା'ର ପେଟରା ଖୋଲି ଦେଖିଲା' ସେଥିରେ ଖଣ୍ଡିଏ ବି ହୀରା ନାହିଁ । ସେ କାହାକୁ ବା କଅଣ କହିବ ? କଥାରେ ଅଛି—"ଚୋରର ମା' ଯଦି କାନ୍ଦେ, ଦୁଆର କଣ କାନ୍ଦେ ।" ସେ ବୁଝିଗଲା, ସେ ଚୋରି କରିଥିବା କଥା ନିଶ୍ଚୟ ଧରାପଡ଼ିଯିବ ।

କାଳିଦାସ ହୀରା ଚାରିଟି ବୁଦ୍ଧିସାଗରଙ୍କୁ ଦେଲେ । ବୁଦ୍ଧିସାଗର ତାହା ରାଜାଙ୍କୁ ଦେଲେ । ଏହାପରେ ରାଜା ଚାରିପୁଅଙ୍କୁ ଡକାଇ

ଆଣିଲେ । ସେ ସେମାନଙ୍କୁ ହୀରା ଗୁଡ଼ିକ ଦେଖାଇ ପଚାରିଲେ- "ଏସବୁ ତୁମର ହୀରା କି ନୁହେଁ ?"



[କଣା ପାନଖାଇ ରାଜାପୁଅ ଅଚେତ]

ରାଜାପୁଅମାନେ ହୀରାସବୁ ଚିହ୍ନିପାରିଲେ । ସେମାନେ ରାଜାଙ୍କୁ ବହୁତ ଧନ୍ୟବାଦ ଦେଲେ । ଏହାପରେ ରାଜା ତିନି ରାଜପୁଅଙ୍କୁ ଗୋଟିଏ

କରି ଛାଡ଼ି ଦେଇଦେଲେ । ସେମାନେ ରାଜାଙ୍କଠାରୁ ବିଦାୟ ନେଇ ନିଜ ରାଜ୍ୟକୁ ଗଲେ ।

ପରେ ରାଜା ଜାଣିପାରିଲେ ଯେ କାଳିଦାସଙ୍କ ବୁଦ୍ଧି ଯୋଗୁଁ ହିଁ ହୀରାଚୋର ଧରାପଡ଼ିଲା । ତେଣୁ ସେ କାଳିଦାସଙ୍କୁ ବହୁତ ଧନରତ୍ନ ପୁରସ୍କାର ଦେଲେ ।

—o—

# ଅଭିଶାପ ନା ଆଶୀର୍ବାଦ ?

ରଜା ଭୋଜଙ୍କ ସଭାକୁ ଅନେକଆଡ଼ୁ ଅନେକ ବ୍ରାହ୍ମଣ ଧନ ଆଶାରେ ଆସନ୍ତି । ସେମାନେ ରଜାଙ୍କୁ ଆଶୀର୍ବାଦ ଦଅନ୍ତି । ରଜା ସେମାନଙ୍କୁ ଧନ ଦେଇ ସନ୍ତୁଷ୍ଟ କରନ୍ତି । ଦିନେ ଲୋକ ଗହଳରେ ସଭା ଫାଟି ପଡ଼ୁଥାଏ । ଏତିକିବେଳେ ଜଣେ ଗରିବ ବ୍ରାହ୍ମଣ ଆସି ରାଜାଙ୍କୁ ଆଶୀର୍ବାଦ ଦେଲେ —

"ତିନ ପୀଡ଼ା ନିତ୍ୟ ପାଅ"

ଭାବାର୍ଥ :—ହେ ରାଜା, ତୁମେ ପ୍ରତିଦିନ ତିନି ପ୍ରକାର ପୀଡ଼ା ପାଉଥାଅ ।

ଏହା ଶୁଣି ସଭାରେ ବସିଥିବା ଲୋକେ ବ୍ରାହ୍ମଣ ମୁହଁକୁ ଓ ରାଜାଙ୍କ ମୁହଁକୁ ଚାହିଁବାକୁ ଲାଗିଲେ । ବ୍ରାହ୍ମଣ ଯାହା କହିଲା, ତାହା ତ ଆଶୀର୍ବାଦ ନୁହେଁ, ଓଲଟି ରାଜାଙ୍କ ଉପରେ ଅଭିଶାପ । ନହେଲେ ରାଜାଙ୍କୁ ନିତ୍ୟ ତିନିପ୍ରକାର ପୀଡ଼ା ହେଉ ବୋଲି ସେ କହନ୍ତା କାହିଁକି ?

ଏତେବଡ଼ ସଭା ମଝିରେ ଠିଆହୋଇ ତାଙ୍କୁ ବିନା କାରଣରେ ଅଭିଶାପ ଦେବାରୁ ରାଜା ରାଗିଯାଇ କହିଲେ—"ଦୂର୍ ହ କାଙ୍ଗାଳ ବ୍ରାହ୍ମଣ ! କିଏ ଅଛରେ ସିପାହୀ, ଏ ଭିକମଗା ବ୍ରାହ୍ମଣକୁ ଧକ୍କା ଦେଇ ଏଠାରୁ ବାହାର କରିଦିଅ ।"

ରଜାଙ୍କ ପାଟି ଶୁଣିଲାକ୍ଷଣି ଦୁଇଜଣ ସିପାହୀ ଆସି ବ୍ରାହ୍ମଣର ବେକଣାଧରି ସଭାଘରୁ ବାହାର କରିଦେଲେ । ସଭାରୁ ତଡ଼ାଖାଇ ଆଉ ସିପାହୀଙ୍କ ହାତରେ ଧକ୍କା ଖାଇ, ବ୍ରାହ୍ମଣ କାନ୍ଦି କାନ୍ଦି ଘରକୁ ଫେରିଲା । ସେ କେତେ ଆଶା କରି ଆସିଥିଲା, ତା'ର ପାଞ୍ଚପ୍ରାଣୀ କୁଟୁମ୍ବକୁ ଭଲକରି ଦି'ମୁଠା ଖାଇବାକୁ ଦେବ । କିନ୍ତୁ ତା'ର ସବୁ ଆଶା ଫସର ଫାଟିଗଲା । ସେ ରଜା ଘରକୁ ଆସିଛି ବୋଲି ତା'ର ପିଲା-ଛୁଆ ତା'ର ଯିବା ବାଟକୁ ଚାହିଁ ବସିଥିବେ । ସେ ସେମାନଙ୍କ ହାତରେ କ'ଣ ଦେବ ? କ'ଣ କହି ସେମାନଙ୍କର ମନ ଭୁଲାଇବ ?

ବ୍ରାହ୍ମଣ ଏମିତି ଭାବ ଭାବ ଚାଲିଥାଏ । ତା'ର ଆଖିରୁ ଧାର ଧାର ହୋଇ ଲୁହ ଗଡ଼ିଯାଉଥାଏ । ଦଇବ ଯୋଗକୁ ସେଦିନ କାଳିଦାସ ଘରୁ ବାହାରୁ ବାହାରୁ ଟିକିଏ ଡେରି ହୋଇଯାଇଥିଲା । ସେ ବାଟରେ ବ୍ରାହ୍ମଣକୁ ଦେଖି ପଚାରିଲେ—"କ'ଣ ଭାଇ, କାନ୍ଦୁଛ କାହିଁକି ? କଥା କ'ଣ ?"

ରାଜଘରକୁ ଯାଉଥିବା ଉଠିଥିଲା କାଳିଦାସଙ୍କୁ ବ୍ରାହ୍ମଣ ବୁଝାଇ କହିଦେଲା । ତାହା ଶୁଣି କାଳିଦାସ ମନରେ ଗରିବ ବ୍ରାହ୍ମଣ ପ୍ରତି ଦୟା ଆସିଲା । ସେ କହିଲେ "ଯାହା ହେବାର ହେଲାଣି, ଆଉ କାନ୍ଦି ଲାଭ କ'ଣ ? ମୁଁ ରାଜାଙ୍କ ପାଖକୁ ଏକ୍ଷଣି ଯାଉଛି । ତୁମକୁ କିଛି ଧନ ମିଳିବାର ଉପାୟ କରିବ ।"

କାଳିଦାସ ଯେମିତି ସଭାଘରେ ପଶିଛନ୍ତି, ରାଜା ତାଙ୍କୁ କହିଲେ—

"ତିନି ପୀଡ଼ା ନତ ପାଅ" ।

ତାହା ଶୁଣି କାଳିଦାସ ସାଙ୍ଗେ ସାଙ୍ଗେ ଏକ ଶ୍ଳୋକ କହିଲେ—ତାହାର ଭବାନୁବାଦ :—

ପରଜା ମଙ୍ଗଳ ବ୍ରାହ୍ମଣଙ୍କୁ ଦାନ
ବଇରି ଶକତି କ୍ଷୟ
ଅଧିକ କରିବା ପାଇଁ ମନ ବଳୁ,
ତିନି ପୀଡ଼ା ନତ ପାଅ ।

ଭବାର୍ଥ :– ମୁଁ କିପରି ପ୍ରଜାମାନଙ୍କର ଅଧିକ ଉପକାର କରିବି, କିପରି ବ୍ରାହ୍ମଣମାନଙ୍କୁ ଅଧିକ ଦାନ ଦେବି ଏବଂ ଶତ୍ରୁର ବଳ କିପରି ନାଶ କରିବି—"ହେ ରାଜା, ଏହି ତିନୋଟି ପୀଡ଼ା ତୁମେ ନତ ପାଉଥାଅ ବା ଏହି ତିନୋଟି ବିଷୟରେ ତୁମେ ପ୍ରତିଦିନ ଚିନ୍ତା କରୁଥାଅ ।"

କାଳିଦାସଙ୍କ କଥା ଶୁଣି ରାଜାଙ୍କର ମୁହଁ କାହିଁକି ଶୁଖିଗଲା । ସେ ସାଙ୍ଗେ ସାଙ୍ଗେ କଟୁଆଳକୁ ଡକାଇ କହିଲେ—"ତୋକୁ ଯେଉଁ ବ୍ରାହ୍ମଣ ଆସିଥିଲେ, ତାଙ୍କୁ ପାଲିଙ୍କିରେ ବସାଇ ରାଜସଭାକୁ ନେଇଆସ ।"

ବ୍ରାହ୍ମଣଙ୍କ ଘର କେଉଁଠି ବୁଝି କଟୁଆଳ ତା'ର ଘରକୁ ଗଲା ।
୬। ବ୍ରାହ୍ମଣଙ୍କୁ ପାଇକମାନେ ବାନ୍ଧି ରଜାଙ୍କ ପାଖକୁ ନେଇଆସିଲେ ।



[ସିପାହୀମାନେ ବ୍ରାହ୍ମଣଙ୍କୁ ରାଜସଭାରୁ ବାହାର କରିଦେଉଛନ୍ତି]

ରାଜା ବ୍ରାହ୍ମଣଙ୍କୁ କହିଲେ—"ହେ ବ୍ରାହ୍ମଣ ଶ୍ରେଷ୍ଠ, ମୁଁ ନଜାଣି ତୁମକୁ ଦଣ୍ଡ ଦେଇଛି ! ଦୟାକରି ମୋର ଦୋଷ କ୍ଷମାକର । ତୁମର ଆଶୀର୍ବାଦକୁ ମୁଁ ଭୁଲରେ ଅଭିଶାପ ବୋଲି ଧରିନେଲି । ବର୍ତ୍ତମାନ ତୁମେ ଏଇ ଦଶହଜାର ସୁନାମୋହର ନିଅ । ଏହା ତୁମର ଆଶୀର୍ବାଦର ପୁରସ୍କାର ।"

ବ୍ରାହ୍ମଣ ତା'ର ଛିଣ୍ଡା ଗାମୁଛାରେ ମୋହର ସବୁ ବାନ୍ଧିଲାବେଳେ ସେସବୁ ଗୋଟିକ ପରେ ଗୋଟିଏ ତଳେ ଗଳିପଡ଼ୁଥିଲା । ତେଣୁ ରାଜା ତାଙ୍କୁ ଭଲ ଭଲ ପୋଷାକ ଆଣିଦେଲେ । ପୁଣି ପାଲିଙ୍କିରେ ବସାଇ କଟୁଆଳ ସହ ତାଙ୍କୁ ତା' ଘରେ ଛାଡ଼ିଦେଲେ । ସେହିଦିନଠାରୁ ବ୍ରାହ୍ମଣର ଆଉ ଅଭାବ ରହିଲା ନାହିଁ । କାଳିଦାସଙ୍କ ଯୋଗୁଁ ତା'ର ଭାଗ୍ୟ ବଦଳିଗଲା । ତେଣୁ ସେ ସବୁଆଡ଼େ କାଳିଦାସଙ୍କ ପ୍ରଶଂସା ଗାଇ ବୁଲିଲେ ।

—o—

# ପାଠୁଆ ଚୋର

ରଜା ଭୋଜ ସେଦିନ ଶିକାର କରି ଫେରୁ ଫେରୁ ବହୁତ ଡେରି ହୋଇଯାଇଥିଲା । ସେ ବି ବୁଲି ବୁଲି ହାଲିଆ ହୋଇଯାଇଥିଲେ । ତେଣୁ ରାତିରେ ଖାଇପିଇ ସେଜ ଧରୁ ଧରୁ ନିଘୋଡ଼ ନିଦରେ ଶୋଇପଡ଼ିଲେ ।



[ପାଠୁଆ ଚୋର ଗହଣା ବାକ୍ସ ଖୋଲୁଛି]

ସେହି ରାତିରେ ଗୋଟିଏ ଚୋର ସିନ୍ଧି ଖୋଳି ରଜାଙ୍କ ଶୋଇବା ଘରେ ପହଞ୍ଚିଲା । ତାଙ୍କର ଶୋଇବା ଘରେ ଅନେକ ଧନରତ୍ନ ଥିବାର

ସେ ଜାଣିଥିଲା । ସେ ପାଦ ଚପିଚପି ରାଜାଙ୍କ ମୁଣ୍ଡ ପାଖରେ ଥିବା ବାକ୍ସ ଖୋଲିଲା । ସେହି ବାକ୍ସରେ କୋଟି କୋଟି ଟଙ୍କା ମୂଲ୍ୟର ଗହଣା ଓ ପୋଷାକ ଥିଲା । ବାକ୍ସ ଖୋଲିଲାବେଳକୁ ଧଡ଼୍‌କରି ଶବ୍ଦ ହେଲା । ଶବ୍ଦରେ ରାଜାଙ୍କର ନିଦ ଭାଙ୍ଗିଗଲା ।

ରାଜାଙ୍କର ନିଦ ଭାଙ୍ଗିଗଲା ସତ, ହେଲେ ତାଙ୍କର ଆଖି ଖୋଲି ନଥିଲା । ସେ ଭାରି ବିଦ୍ୱାନ୍ ଥିଲେ । ସେମିତି ଆଖି ବନ୍ଦ କରି ସେ ଗାଇଲେ—

**ଚେତୋହରା ଯୁବତୟଃ ସ୍ୱହୃଦାନୁକୂଳାଃ**
**ସବାନ୍ଧବାଃ ପ୍ରଣୟ ଗର୍ଭ ଗିରଶ୍ଚ ଭୃତ୍ୟା**
**ଗର୍ଜନ୍ତି ଦନ୍ତିନିବହାସ୍ତରଳାସ୍ତୁରଙ୍ଗାଃ**

ଭାବାନୁବାଦ—

ଅପସରା ପରି ସକଳ ରାଣୀ,
ଭୃତ୍ୟଙ୍କର ସେବାରେ ମନକୁ କିଣି,
ଆଦର କରନ୍ତି ବନ୍ଧୁବାନ୍ଧବ,
ହାତୀ ଘୋଡ଼ା ଯେତେ କିଏ କଳିବ ?
ଧନ ଜନମାନ ସବୁ ମୋ ପାଶ

ଭାବାର୍ଥ—ମୋର ରାଣୀମାନେ ଅପ୍‌ସରା ପରି ସୁନ୍ଦରୀ । ଭୃତ୍ୟବର୍ଗଙ୍କର ସେବାରେ ମୋର ମନକୁ ବଶ କରିଦିଅନ୍ତି । ବନ୍ଧୁବାନ୍ଧବ ମୋତେ ଆଦର କରନ୍ତି । ମୋର ଅକଳନ ହାତୀଘୋଡ଼ା ଅଛି । ଏହିପରି ମୋ ପାଖରେ ଧନ-ଜନ-ମାନ ସବୁକିଛି ଅଛି ।

ରାଜା ଏତିକି ଗାଇସାରି ଶେଷ ଧାଡ଼ିଟା ଆଉ ମନେ କରିପାରିଲେ ନାହିଁ । ତେଣୁ ସେ ବାରମ୍ବାର କହିବାକୁ ଲାଗିଲେ —

"ଧନଜନମାନ ସବୁ ମୋ ପାଶ"

ଚୋର ରାଜାଙ୍କର ମୁଣ୍ଡ ପାଖରେ ଠିଆ ହୋଇ ସେହି କବିତା ଶୁଣୁଥିଲା । ଚୋର ହେଲେ କ'ଣ ହେଲା, ସେ ଭାରି ପାଠୁଆ ଥିଲା । ରାଜାଙ୍କୁ

ଶେଷ ଧାଡ଼ିଟି ଆସୁ ନଥିବା ଦେଖି ସେ ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ । ସେ ପାଦପୂରଣ କରିବାକୁ ଯାଇ କହିଲା—

**"ସଂମୀଲନେ ନୟନୟୋର୍ନ ହି କିଂଚଦସ୍ତି"**

ଭାବାନୁବାଦ –

ଆଖି ବୁଜିଦେଲେ ରହିବ କିସ ?

ଭାବାର୍ଥ—ମରିଗଲା ପରେ କୌଣସି ଜିନିଷ ନିଜର ହୋଇ ରହିବ ନାହିଁ ।

ଏକେ ତ ଅଧରାତ୍ରି, ପୁଣି ରାଜାଙ୍କ ଶୋଇବା ଘର । ସେଇଠି ଗୋଟିଏ ଅପରିଚିତ ଲୋକର ପାଟି ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସେ ଲୋକ ପୁଣି ତାଙ୍କ କବିତାର ଶେଷ ଧାଡ଼ିଟି ପୂରଣ କରିଦେଇଛି । ତାଙ୍କୁ ଆହୁରି ଆଶ୍ଚର୍ଯ୍ୟ ଲାଗିଲା । ସେ ସେହିକ୍ଷଣି ଧଡ଼୍‌ପଡ଼୍ ହୋଇ ଉଠି ଦେଖିଲେ, ତାଙ୍କର ମୁଣ୍ଡ ପାଖରେ ଗୋଟିଏ ବ୍ରାହ୍ମଣ ଠିଆହୋଇଛି । ରାଜା ଆଖି ଲାଲ୍‌କରି ପଚାରିଲେ – "ତୁ କିଏ ? ଏତେ ରାତିରେ ମୋର ଶୋଇବା ଘରକୁ ଆସିଛୁ କାହିଁକି ?"

ଲୋକଟି କହିଲା – "ମହାରାଜ, ମିଛ କାହିଁକି କହିବି, ମୁଁ ଗୋଟାଏ ଚୋର । ଆପଣଙ୍କ ଶୋଇବା ଘରୁ ଗହଣାଗାଣ୍ଠି ଚୋରି କରିବାକୁ ଆସିଥିଲି । ମୋର ଭାଗ୍ୟ ଖରାପ, ଆପଣଙ୍କ ହାତରେ ଧରାପଡ଼ିଗଲି । ମୋତେ କ୍ଷମା କରନ୍ତୁ ମହାରାଜ ! ମୁଁ ଆଉ କେବେ ଚୋରି କରିବି ନାହିଁ ।"

ରାଜା ଚୋର ଉପରେ ପ୍ରଥମେ ସିନା ଟିକିଏ ରାଗିଗଲେ, ତା'ର ପାଣ୍ଡିତ୍ୟ ଦେଖି ତା' ଉପରେ ଖୁସି ହୋଇଗଲେ । ସେ ନିଜ ହାତରେ ଭଲ ଭଲ ଗହଣାଗାଣ୍ଠି, ଲୁଗାପଟା ବାକ୍‌ସରୁ ବାହାର କରି ଚୋରକୁ ଦେଇ କହିଲେ—"ହେଇ ଦେଖ, ଏହାକୁ ନେଇ ଘରକୁ ଯାଅ । ଆଉ କେବେ ଚୋରି କରିବ ନାହିଁ ।"

ଚୋରର ଆନନ୍ଦ ଦେଖେ କିଏ ? ସେ ଭଲ ଲୋକଟି ପରି ଜିନିଷ ସବୁ ନେଇ ଘରକୁ ଗଲା । ତା' ପରଦିନ ସେ ଭଲ ଦାମିକା ଲୁଗା ଓ

ଜାମା ପିନ୍ଧି ବଜାରରେ ବୁଲିବାକୁ ଲାଗିଲା । ରଜାଘର ଲୁଗା ଖାଲି ଚକଚକିଆ ଓ ଦାମିକା । ତେଣୁ ସମସ୍ତେ ତା' ଆଡ଼େ ଚାହୁଁଥାନ୍ତି । ଏତିକି ବେଳେ ରଜାଘର ଜଣେ ସିପାହୀ ସେ ବାଟ ଦେଇ ଯାଉଥିଲା । ଲୋକଟି ରଜପୋଷାକ ପିନ୍ଧିଥିବା ଦେଖି ତା'ର ସନ୍ଦେହ ହେଲା । ତେଣୁ ସେ ତାକୁ ରଜାଙ୍କ ପାଖକୁ ନେଇଗଲା ।

ବ୍ରାହ୍ମଣକୁ ଦେଖିବା ମାତ୍ରେ ରଜାଙ୍କର ଗଲା ଦିନର କଥା ମନେ ପଡ଼ିଗଲା । ତଥାପି ମଜା ଦେଖିବା ପାଇଁ ସେ ତାକୁ ପଚାରିଲେ --"ତୁ ଯେ ତ ଗରିବ ବ୍ରାହ୍ମଣ, ଏସବୁ ଦାମିକା ପୋଷାକ ପାଇଲୁ କେଉଁଠୁ ?"

ତା'ର ଉତ୍ତରରେ ବ୍ରାହ୍ମଣ ଏହି ଶ୍ଲୋକ ଶୁଣାଇଲା—

**ଭେକୈଃ କୋଟରଶାୟିଭିର୍ମୃତମିବ**
**କ୍ଷ୍ମାନ୍ତଗତଂ କଚ୍ଛପୈଃ**
**ପାଠୀନୈଃ ପୃଥୁପଙ୍କପୀଠଲୁଠନା**
**ଦ୍ୟସ୍ମିନ୍ମୁହୁର୍ମୂର୍ଚ୍ଛିତମ୍ ।**
**ତସ୍ମିନ୍ ଶୁଷ୍କସରସ୍ୟକାଳ ଜଲଦେ—**
**ନାଗତ୍ୟ ତଚ୍ଚେଷ୍ଟିତଂ**
**ଯତ୍ରା କୁମ୍ଭ ନିମଗ୍ନ ବନ୍ୟ କରିଣାଂ**
**ଯୂଥୈଃ ପୟଃ ପୀୟତେ ॥**

ଭାବାନୁବାଦ—

ଶୁଖି ଯାଇଥିଲା ପୋଖରୀ ଖଦଡ଼ରେ
ବେଙ୍ଗ ଖୋଳୁଥିଲା ଗାତ,
କଇଁଚ ସକଳେ ତଳେ ଲୋଟୁଥିଲା
ହୋଇଲେ ମାଛ ଅଚେତ ।

ଏ କାଳେ ଅକାଳ ମେଘ ଘୋଟିଗଲା
ଢାଳିଲା ବରଷା ଜଳ,

ଗାଧୋଇଲେ ହାଣ୍ଡି        ଜଳଜୀବ ଯେତେ
ଖେଳିଲେ ଖୁସିରେ ଖେଳ ।

ଭାବାର୍ଥ — ଖରାରେ ପୋଖରୀ ଶୁଖିଯାଇଥିଲା । ବେଙ୍ଗ, କଇଁଚ, ମାଛ ଆଦି ଜଳଚର ଜୀବ ଛଟପଟ ହେଉଥିଲେ । ଦିନେ ଅଚାନକ ଘୋର ଜୋର୍‌ରେ ବର୍ଷା ହେଲା । ପୋଖରୀ ପାଣିରେ ଭରିଗଲା । ଜଳଚର ଜୀବସବୁ ଖୁସିରେ ପାଣିରେ ଖେଳିଲେ । ହାଣ୍ଡିମାନେ ପୋଖରୀରେ ଗାଧୋଇବାକୁ ଲାଗିଲେ ।

ଏହାର ଭିତର ଅର୍ଥ — "ଖରାଦିନେ ପୋଖରୀର ପାଣି ଶୁଖିଯିବାରୁ ଜଳଚର ଜୀବମାନେ ଯେପରି ଛଟପଟ ହୁଅନ୍ତି, ଧନର ଅଭାବରେ ମୁଁ ସେହିପରି ଛଟପଟ ହେଉଥିଲି । ହଠାତ୍ ଅଦିନ ବର୍ଷାରେ ଯେପରି ପୋଖରୀ ପାଣିରେ ଭରିଯାଏ ଏବଂ ଜଳଚର ଜୀବ ସବୁ ଖୁସିରେ ଖେଳିବାକୁ ଲାଗନ୍ତି, ସେହିପରି ଆପଣଙ୍କ (ରାଜାଙ୍କ) ଦୟାରୁ ଏସବୁ ଦାମିକା ପୋଷାକ ଓ ଗହଣା ମୋତେ ମିଳିଲା । ତେଣୁ ମୁଁ ଖୁସିରେ ତାହା ପିନ୍ଧି ବୁଲୁଥିଲି ।"

ବ୍ରାହ୍ମଣର କଥା ଶୁଣି ରାଜା ଭାରି ଖୁସି ହୋଇଗଲେ । ତା'ର ପାଣ୍ଡିତ୍ୟ ଦେଖି ସଭା ପଣ୍ଡିତମାନେ ବି ତାକୁ ଧନ୍ୟ ଧନ୍ୟ କଲେ । ରାଜା କାଳିଦାସଙ୍କୁ ପାଖକୁ ଡାକି ଗଲା ରାତିର ସବୁକଥା କହିଲେ ।

କାଳିଦାସ କହିଲେ — "ମହାରାଜ, ଧନର ଅଭାବ ଯୋଗୁଁ ମଣିଷ ମନ୍ଦକାର୍ଯ୍ୟ କରିବାକୁ ଯାଏ । ଅଭାବ ପଡ଼ିଲେ ହିଁ ମଣିଷ ଚୋରି କରେ । ତେଣୁ ଆପଣ ଚୋରକୁ ଧନ ଦେଇ ଭଲ କରିଛନ୍ତି । ହେଲେ ଏ ସାଧାରଣ ଚୋର ନୁହେଁ । ଏ ଜାତିରେ ବ୍ରାହ୍ମଣ, ପୁଣି ପାଠୁଆ । ଭଲ ଶ୍ଳୋକଟାଏ ବି ଏଠି ଶୁଣାଇଲେ । ତେଣୁ ତାକୁ ଆଉ କିଛି ପୁରସ୍କାର ଦିଅନ୍ତୁ ଯିମିତି ତା' ଜୀବନରେ କେବେ ଅଭାବ ପଡ଼ିବ ନାହିଁ କି ସେ କେବେ ଚୋରି କରିବାକୁ ମନ ବଳାଇବ ନାହିଁ ।"

କାଳିଦାସଙ୍କ କଥା ରାଜାଙ୍କ ମନକୁ ପାଇଲା । ସେ ବ୍ରାହ୍ମଣକୁ ଦଶହଜାର ସୁନାମୋହର ପୁରସ୍କାର ଦେଇ ବିଦାକଲେ । ସେହିଦିନଠାରୁ ବ୍ରାହ୍ମଣ ଚୋରି କରିବା ଛାଡ଼ିଦେଲା ।

—o—

# କାନ୍ତିକବି ବୋକା ବନିଲେ

ଥରେ କାନ୍ତିକବି ଭୋଜରାଜାଙ୍କ ସଭାକୁ ଗୋଟିଏ କବିତା ଲେଖି ପଠାଇଥିଲେ । କାଳିଦାସ ତାହାକୁ ହସି ଉଡ଼ାଇ ଦେଇଥିଲେ । ତେଣୁ କାନ୍ତିକବିଙ୍କୁ ଘୋର ଅପମାନ ଲାଗିଲା । ସେ କାଳିଦାସଙ୍କ ଉପରେ ରାଗିଲେ । ଦିନେ-ନା-ଦିନେ କାଳିଦାସଙ୍କ ଉପରେ ଏହାର ପ୍ରତିଶୋଧ ନେବାପାଇଁ ସେ ମନେ ମନେ ଠିକ୍ କଲେ ।

ଦିନେ କାନ୍ତିକବି ଧାରାନଗରୀ ଆଡ଼େ ବାହାରି ପଡ଼ିଲେ । ଭୋଜଙ୍କ ରାଜସଭାରେ କାଳିଦାସଙ୍କୁ ଅପମାନ ଦେବାପାଇଁ ସେ ଇଚ୍ଛା କରିଥିଲେ । ସେ ଧାରାନଗରୀ ରାସ୍ତାରେ ଯାଉ ଯାଉ ଗୋଟିଏ ବାଳିକାକୁ ଦେଖି ପଚାରିଲେ—"ତୁ କାହାର ଝିଅ ?"

ବାଳିକାଟି ସାଙ୍ଗେ ସାଙ୍ଗେ ଉତ୍ତର ଦେଲା—

**ପାଞ୍ଚଭର୍ତ୍ତା ନ ପାଞ୍ଚାଳୀ ଦ୍ୱିଜିହ୍ୱା ନ ଚ ସର୍ପିଣୀ**
**ବାନରୀ ନ ଚ କୃଷ୍ଣାସ୍ୟା ତସ୍ୟାହଂ କୁଳବାଳିକା ।**

ଭାବାନୁବାଦ—

ପାଞ୍ଚାଳୀ ନୁହେଁ ସେ ପାଞ୍ଚ ତା' ପତି,
ସାପ ନୁହେଁ ତା'ର ଜିଭ ଦୁଇଟି,
ହନୁ ନୁହେଁ ତା'ର ମୁହଁ କାଳିଆ;
ବେଉସା ଯାର ଏ ମୁଁ ତା' କନିଆ ।

କାନ୍ତିକବି ଏହାର ଅର୍ଥ ବୁଝିନପାରି ଝିଅଟିକୁ ପଚାରିଲେ—ତୁ କାହାର ଝିଅ ବୁଝିହେଲା ନାହିଁ ।

ତେଣୁ, ଝିଅଟି କହିଲା—"ହାତର ପାଞ୍ଚଆଙ୍ଗୁଠି କଲମର ପାଞ୍ଚପତ୍ର । ପାପ ଜଉପରି କଲମର ମୁନ ଦ' ଫାଳିଆ ଏବଂ କାଳି ଲାଗି ତାହା ହନୁର ମୁହଁ ପରି କଳା ଦିଶୁଥାଏ । କରଣର ବେଉସା ହେଲା କଲମରେ ଲେଖିବା । ମୁଁ କରଣ ଘର ଝିଅ । ଆପଣ ବ୍ରାହ୍ମଣ ହୋଇ ଏଇ ସାଧାରଣ କଥାଟି ବୁଝିପାରୁନାହାନ୍ତି ?"

ଝିଅଟିର କଥା ଶୁଣି କାନ୍ତକବି କାବା ହୋଇଗଲେ । ଘର ବାଳିକାଟାଏ ତାଙ୍କୁ ବୋକା ବନାଇଦେଲା ! ଆଉ କିଛିଦୂର ଗଲାପରେ ସେ ଆଉ ଏକ ବାଳିକାକୁ ଦେଖିଲେ । ତାକୁ ପଚାରିଲେ—"ତୁ କାହାର ଝିଅ ?"

ବାଳିକା କହିଲା—

**ନିତ୍ୟଂ କୁଠୋହ୍ୟାତ ଦ୍ରବ୍ୟାଣି**
**ଶତ୍ରୁଂ ମିତ୍ରଂ ନ ଜାନାତି**
**ଚୌର୍ଯ୍ୟକାରୀ ଦିନେ ଦିନେ**
**ତସ୍ୟାହଂ କୁଳବାଳିକା ।**

ଭାବାନୁବାଦ—

ହୋମ ଯେ କରଇ ଦରବ ନିତି
ଚୋରି କରିବାରେ ଚତୁର ଅତି,
ଶତ୍ରୁ ମିତ୍ରଙ୍କୁ ଯେ ଦେଖେ ସମାନ,
ମୁହିଁ ସେ ଜାତିର ଝିଅଟି ଜାଣ ।

କାନ୍ତକବି ଏହାର ଅର୍ଥ ବୁଝି ନପାରି ତାକୁ ପୁଣି ସେହି କଥା ପଚାରିଲେ । ତହୁଁ ଝିଅଟି କହିଲା—"ବଣିଆ ନିତି ସୁନା ରୁପାକୁ ନିଆଁରେ ପକାଇ ପୋଡ଼େ । ସେ ବି ଚୋରି କରିବାରେ ଧୁରନ୍ଧର । ଶତ୍ରୁ ହେଉ ବା ମିତ୍ର ହେଉ, ସେ ସମସ୍ତଙ୍କୁ ଏକାପରି ଠକେ । ମୁଁ ସେହି ବଣିଆ ଘର ଝିଅ । ଏବେ ବୁଝିଲଟି ? ଏଇ ସାମାନ୍ୟ କଥାଟା ବୁଝିପାରୁନଥିଲ ?"

ବାଳିକାର କଥା ଶୁଣି କାନ୍ତକବି ମୁହଁ ଶୁଖାଇ ଗୁଳବାକୁ ଲାଗିଲେ । ସେ ଭାବିଲେ, ଏଠିକା ଝିଅସବୁ କ'ଣ ଏତେ ପାଠୋଈ ?



[ ବାଳିକାର କଥା ଶୁଣି କାନ୍ତକବି ଚକିତ ]

ଗ୍ରାମାଞ୍ଚଳରେ ଯଦି ଏମିତି ପାଠୁଆ ଲୋକ ଦେଖିବାକୁ ମିଳୁଛି, ରାଜସଭାରେ

କମିତ ପାଠୁଆ ଲୋକ ନଥିବେ ? କିଛିଦୂର ଗଲା ପରେ ସେ ଅନ୍ୟ ଏକ ବାଳିକାକୁ ଦେଖି ପଚାରିଲେ—"ତୁ କାହାର ଝିଅ ?"

ବାଳିକା କହିଲା—

**ହାଥସ୍ତ୍ୟସ୍ତି ଶିରୋନାସ୍ତି ନ ସନ୍ତ୍ୟଙ୍ଗୁଳିକା ଦଶ**
**ତସ୍ୟୋପୂର୍ତ୍ତିକରୋ ଯସ୍ତୁ ତସ୍ୟାହଂ କୁଳବାଳିକା**

ଭାବାନୁବାଦ—

ଅଛି ହାତ, ନାହିଁ ମୁଣ୍ଡ ଆଙ୍ଗୁଠି
କରେ ଯେ ତିଆର ମୁଁ ତା' ଝିଅଟି ।

କାଳିଦାସ କେତେ ମୁଣ୍ଡ ଖେଳାଇଲେ । କିନ୍ତୁ ଏହାର ଅର୍ଥ ବୁଝିପାରିଲେ ନାହିଁ । ତେଣୁ ସେ ବାଳିକାକୁ ତାହାର ଅର୍ଥ ପଚାରିଲେ । ବାଳିକା କହିଲା—"ଜାମାର ହାତ ଅଛି, କିନ୍ତୁ ମୁଣ୍ଡ ବା ଆଙ୍ଗୁଠି ନାହିଁ । ଦରଜି ଜାମା ତିଆରି କରେ । ମୁଁ ଜଣେ ଦରଜିର ଝିଅ ।"

ଆଉ କିଛିଦୂର ଗଲାପରେ କାଳିଦାସ ଦେଖିଲେ, ଦୁଇଟି ବାଳିକା ହାତ ଧରାଧରି ହୋଇ ଆସୁଛନ୍ତି । ସେ ସେମାନଙ୍କ ମଧ୍ୟରୁ ଜଣକୁ ପଚାରିଲେ—"ତୁ କାହାଘର ଝିଅ ?"

ବାଳିକା କହିଲା—

**ନର୍ଜୀବୋ ଜୀବତୋ ବାପି ଶ୍ୱାସୋଚ୍ଛ୍ୱାସ ବଶେଷତଃ**
**କୁଟୁମ୍ବ କଳହୋ ନାସ୍ତି ତସ୍ୟାହଂ କୁଳବାଳିକା ।**

ଭାବାନୁବାଦ—

ଜୀବନ ନାହିଁ ତା' ଚଳଇ ଶ୍ୱାସ,
ଘରେ ତାର କଳି ନହୁଏ ଲେଶ,
ପେଟ ପୋଷେ ଯେହୁ ତାହାକୁ ନେଇ,
ସେ ଜାତିର ଝିଅ ମୁହିଁ ଗୋପାଳି ।

ଏଥର ବି କାଳିଦାସ କବିତାର ଅର୍ଥ ବୁଝି ନପାରି ବାଳିକାକୁ ତାହାର ଅର୍ଥ ପଚାରିଲେ । ବାଳିକା କହିଲା—"କମାର ଭିତରେ ଜୀବନ ନାହିଁ । କିନ୍ତୁ ତା' ଭିତରେ ବରାବର ପବନ ଯିବାଆସିବା କରୁଛି । ସୂର୍ଯ୍ୟ ଭିତ ଏବଂ ନିଆଁ ଭିତରେ କେବେ କଳି ହୁଏନାହିଁ । ସେମାନେ ନିଜ ନିଜ କାମ ମିଳିମିଶି କରିଥାଆନ୍ତି । ଏହି ଜେଉଁଆ କରି କମାର ପେଟ ପୋଷେ । ବୁଝିଲ ଗୋସାଇଁ, ମୁଁ କମାର ଘର ଝିଅ ।"

ଏହାପରେ କାଳିଦାସ ଅନ୍ୟ ବାଳିକାକୁ ତା'ର ପରିଚୟ ପଚାରିଲେ । ବାଳିକାଟି ସାଙ୍ଗେ ସାଙ୍ଗେ ଉତ୍ତର ଦେଲା—

**ଚକ୍ରୈକ ନ ରଥୀ ସୂର୍ଯ୍ୟୋ ଭୂମୌ ତିଷ୍ଠତି ସାରଥି**
**ଅଗସ୍ତ୍ୟ ଜାତ ଜନ୍ମୋଣଃ ତସ୍ୟାହଂ କୁଳବାଳକା ।**

ଭାବାନୁବାଦ—

ରବି ରଥ ନୁହେଁ ଚକ ଗୋଟିଏ
ତଳେ ବସିଅଛି ସାରଥି ଯିଏ,
ଜନମିଲେ ଯହୁଁ ଅଗସ୍ତି ମୁନି;
ଗଢ଼େ ଯେ ତାହାକୁ ମୁଁ ତା' ଦୁଲଣୀ ।

କାଳିଦାସ ଏହାର ଅର୍ଥ ବୁଝି ନପାରିବାରୁ ବାଳିକା କହିଲା—"କୁମ୍ଭାର ଚକ ଗୋଟିଏ, କିନ୍ତୁ ତାହା ସୂର୍ଯ୍ୟଙ୍କର ରଥ ନୁହେଁ । ସେହି ରଥର ସାରଥି ବା କୁମ୍ଭାର ତଳେ ବସିଛି । ଅଗସ୍ତି ମୁନି ମାଟି କଳସୀରୁ ଜନ୍ମଗ୍ରହଣ କରିଥିଲେ । ମାଟି କଳସୀକୁ କୁମ୍ଭାର ଗଢ଼େ । ମୁଁ ଏକ କୁମ୍ଭାରେ ଝିଅ ।

କାଳିଦାସ ଏହିପରି ରାସ୍ତାରେ ଯାଉଥିବା ପାଞ୍ଚଟି ବାଳିକା ନିକଟରେ ପରାସ୍ତ ହୋଇ ଭାବିଲେ—"ନା, ଆଉ ରାଜସଭାକୁ ଯିବିନାହିଁ । ଧାରାନଗରୀରେ ଟିକିଏ ବୁଲି ଘରକୁ ଫେରିଯିବି । ଏଠିକା ସାଧାରଣ ଝିଅଙ୍କଠାରେ ତ ହାରି ମାନିଲି, ଆଉ କେଉଁ ମୁହଁରେ ଯାଇ କାଳିଦାସଙ୍କ ସହିତ ଯୁକ୍ତି କରିବି ?"

ସେ ଧାରାନଗରୀର ଗୋଟିଏ ଗଳିରେ ବୁଲୁବୁଲୁ ଜଣେ ବ୍ରାହ୍ମଣ ମନ୍ଦିରରୁ ଫେରୁଥିବା ଦେଖିଲେ । ସେ ବ୍ରାହ୍ମଣଙ୍କୁ ପଚାରିଲେ—"ଆପଣ କେଉଁ ଦେବତାଙ୍କୁ ପୂଜା କରନ୍ତି ?"

ବ୍ରାହ୍ମଣ କହିଲେ—

**ବୃହଂଗୋ ବାହନଂ ଯସ୍ୟ ତ୍ରିକଚ ଯସ୍ୟ ଭୂଷଣଂ**
**ପାଲପା ବାମ ଭାଗେ ଚ ତେ ଦେବା ଶରଣଂ ମମ ।**

ଭାବାନୁବାଦ—

ବୃହଂଗ ଯାହାଙ୍କ ଅଟେ ବାହନ,
ତ୍ରିକଚ କରଇ କର ମଣ୍ଡନ

ପାପାଲ ବସନ୍ତି ବାମ ପାଶରେ
ନମଇ ମୁଁ ନତ ସେ ପାଦତଳେ ।

ଭାବାର୍ଥ—ବୃଷଭ, ହଂସ ଓ ଗରୁଡ଼ (ବୃହଂଗ) ଯାହାଙ୍କର ବାହନ, ତ୍ରିଶୂଳ, କମଣ୍ଡଳୁ ଓ ଚକ୍ର (ତ୍ରିକଚ) ଯାହାଙ୍କ ହାତରେ ଶୋଭାପାଏ ଏବଂ ପାର୍ବତୀ, ସାବିତ୍ରୀ ଓ ଲକ୍ଷ୍ମୀ (ପାପାଲ) ଯାହାଙ୍କର ବାମ ପାଖରେ ବସନ୍ତି, ମୁଁ ସେହି ଶିବ, ବ୍ରହ୍ମା ଓ ବିଷ୍ଣୁଙ୍କୁ ପୂଜା କରେ ।

କାନ୍ତିକବି ଏହାର ଅର୍ଥ କିଛି ବୁଝିନପାରି ମୁଣ୍ଡ ତଳକୁ କରି ଚାଲିଗଲେ । ସେ ସେହିଦିନ ଘରକୁ ଫେରିଗଲେ । ସେ କାଳିଦାସଙ୍କ ସହିତ ଦେଖା କରିବାକୁ ମଧ୍ୟ ସାହସ କଲେ ନାହିଁ ।

କାନ୍ତିକବି ଯେଉଁ ବ୍ରାହ୍ମଣଙ୍କୁ ମନ୍ଦିର ପାଖରେ ଦେଖିଥିଲେ, ସେ କିଏ ଜାଣ ? ସେ ହେଉଛନ୍ତି ନିଜେ କାଳିଦାସ । ସେ ସେତେବେଳେ ମନ୍ଦିରରେ ଠାକୁର ଦର୍ଶନ କରି ଘରକୁ ଫେରୁଥାନ୍ତି ।

—୦—

# ଯେସାକୁ ତେସା

କୌଣସି ପଣ୍ଡିତ ଭଲ ଶ୍ଳୋକ ରଚନା କରି ଦେଖାଇଲେ ରାଜା ଭୋଜ ତାଙ୍କୁ ହଜାରେ ଟଙ୍କା ପୁରସ୍କାର ଦେଉଥିଲେ । ତେଣୁ ଦେଶବିଦେଶରୁ ଅନେକ ପଣ୍ଡିତ ଧାରାନଗରୀକୁ ଆସି ରାଜାଙ୍କୁ ସୁନ୍ଦର ସୁନ୍ଦର ଶ୍ଳୋକ ଶୁଣାଉଥିଲେ । ଥରେ କବି ଶତଞ୍ଜୀବ ରାଜସଭାରେ କାଳିଦାସଙ୍କଠାରେ ପରାସ୍ତ ହୋଇଥିଲେ । ତେଣୁ ସେ କାଳିଦାସଙ୍କୁ ଦିନେ-ନା-ଦିନେ ରାଜସଭାରେ ଅପମାନ ଦେବେ ବୋଲି ମନେ ମନେ ପ୍ରତିଜ୍ଞା କରିଥିଲେ ।

ଦିନେ କାଳିଦାସଙ୍କୁ ଅପମାନ ଦେବାପାଇଁ ଶତଞ୍ଜୀବ ଏକ କୌଶଳ କଲେ । ସେ କାଳିଦାସଙ୍କର ନିନ୍ଦା କରି ଗୋଟିଏ ଶ୍ଳୋକ ରଚନା କଲେ । ସେ ଶ୍ଳୋକଟି ତାଳପତ୍ରରେ ଲେଖି ତାଙ୍କର ଜଣେ ଶିଷ୍ୟ ହାତରେ ଭୋଜରାଜାଙ୍କ ପାଖକୁ ପଠାଇଦେଲେ । ଦଇବ ଯୋଗକୁ ତାଙ୍କର ଶିଷ୍ୟ ରାଜସଭାକୁ ଯାଉଯାଉ ବାଟରେ କାଳିଦାସଙ୍କ ଆଖିରେ ପଡ଼ିଲା । ସେ କାଳିଦାସଙ୍କୁ ଚିହ୍ନି ନଥିଲା । ଲୋକଟି ତରବର ହୋଇ ଯାଉଥିବା ଦେଖି କାଳିଦାସ ତାକୁ ପଚାରିଲେ—"କହୋ ଭାଇ, ଏମିତି ତରବର ହୋଇ ଦୌଡ଼ୁଛ କାହିଁକି ? ତୁମେ କିଏ ? କୁଆଡ଼େ ଯାଉଛ ?"

ଶତଞ୍ଜୀବଙ୍କ ଶିଷ୍ୟ କହିଲା—"ଆଜ୍ଞା ମୁଁ କବି ଶତଞ୍ଜୀବଙ୍କ ଶିଷ୍ୟ । ମୋର ଗୁରୁ ଗୋଟିଏ ନୂଆ ଶ୍ଳୋକ ଲେଖି ପଠାଇଛନ୍ତି । ମୁଁ ତାହା ନେଇ ଭୋଜରାଜାଙ୍କ ନିକଟକୁ ଯାଉଛି ।"

କାଳିଦାସ କୌତୂହଳୀ ହୋଇ କହିଲେ—"ସତ ନା ? ଭାରି ଭଲ ଶ୍ଳୋକ ହୋଇଥିବ ଏକା । କାହିଁ ଦେଖି, କେମିତିକା ଶ୍ଳୋକ ହୋଇଛି ।"



[ ଶତଞ୍ଜୟଙ୍କ ଶିଷ୍ୟ ସହିତ କାଳିଦାସଙ୍କ ଭେଟ ]

ଶିଷ୍ୟ ଜଣକ ତାଙ୍କର ଆଗ୍ରହ ଦେଖି କାଳିଦାସଙ୍କ ହାତକୁ ଲେଖାଟି ବଢ଼ାଇଦେଲା । ସେଥିରେ ଲେଖାଥିଲା—

**ଅପଶବ୍ଦ ଶତଂ ମାଘେ ଭାରବୌ ଚ ଶତତ୍ରୟମ୍**
**କାଳିଦାସେ ନ ଗଣ୍ୟନ୍ତେ କବିରେକଃ ଶତଞ୍ଜୟଃ ।**

ଭାବାନୁବାଦ—

ମାଘ କାବ୍ୟେ ସିନା ରହିଛି ଶହେ ଅପ ଶବଦ,
ଭାରବୀଙ୍କ କାବ୍ୟେ ଏସନ ତିନି ଶହ ଶବଦ,
ଅଗଣିତ ପୁଣି ରହିଛି କାଳିଦାସ ଲେଖାରେ
କବି ଶତଞ୍ଜୟ ଏକ ହିଁ କିଏ ନ ଜାଣେ ଭଲେ ?

ଭାବାର୍ଥ—ମାଘଙ୍କ କାବ୍ୟରେ ଶହେଟି ଅପଶବ୍ଦ ବା ଭୁଲ ପଦ ଅଛି । ଭାରବୀଙ୍କ କାବ୍ୟରେ ଏ ପ୍ରକାର ତିନିଶହ ଭୁଲ ପଦ ଅଛି । କାଳିଦାସଙ୍କ ଲେଖାରେ ଏତେ ଭୁଲ ପଦ ଅଛି ଯେ, ସେସବୁ ଗଣାଯାଇ ପାରିବ ନାହିଁ । କବି କହିଲେ କେବଳ ଶତଞ୍ଜୟଙ୍କୁ ହିଁ ବୁଝାଏ । ଏକଥା କିଏ ବା ନଜାଣେ ?

ଶ୍ଲୋକଟି ପଢ଼ି କାଳିଦାସ ସବୁ ବୁଝିପାରିଲେ । ସେ ମୁରୁକି ହସି କହିଲେ—"ଭାଇ, ଶ୍ଲୋକଟି ଭାରି ଭଲ ହୋଇଛି । ହେଲେ ଶତଞ୍ଜୟ ଭୁଲରେ ଗୋଟିଏ ଜାଗାରେ ଆକାରଟିଏ ଛାଡ଼ିଦେଇଛନ୍ତି । ସେଠାରେ ଆକାରଟି ଯୋଡ଼ିଦେଲେ ଶ୍ଲୋକଟି ଚମତ୍କାର ହେବ ଏବଂ ରାଜାଙ୍କଠାରୁ ପୁରସ୍କାର ମିଳିବ ।"

ତାହା ଶୁଣି କାଳିଦାସ ସାଙ୍ଗେ ସାଙ୍ଗେ 'ଅପଶବ୍ଦ'ର 'ଅ' କୁ 'ଆ' କରିଦେଲେ । ଏବେ ତାହା ହୋଇଗଲା 'ଆପଶବ୍ଦ' । ଶତଞ୍ଜୟଙ୍କ ଶିଷ୍ୟ କାଳିଦାସଙ୍କୁ ଧନ୍ୟବାଦ ଜଣାଇ ରାଜସଭାକୁ ଗଲା । ସେଠାରେ ସେ ରାଜାଙ୍କୁ ନିଜର ପରିଚୟ ଦେବାକୁ ଯାଇ କହିଲା—"ମହାରାଜ, ମୋର ଗୁରୁ କବି ଶତଞ୍ଜୟ ମୋ ହାତରେ ଗୋଟିଏ ନୂଆ ଶ୍ଲୋକ ପଠାଇଛନ୍ତି । ଆପଣ ଅନୁମତି ଦେଲେ ସଭାରେ ତାହା ପଢ଼ି ଶୁଣାଇବି ।"

ରାଜା ପଢ଼ିବାକୁ ଅନୁମତି ଦେଲେ । ତହୁଁ ସେ ପଢ଼ିବାକୁ ଲାଗିଲା—

**ଆପଶବ୍ଦ ଶତଂ ମାଘେ ଭାରବୌ ଚ ଶତତ୍ରୟମ୍**
**କାଳିଦାସେ ନ ଗଣ୍ୟନ୍ତେ କବିରେକଃ ଶତଞ୍ଜୟଃ ।**

ଭାବାନୁବାଦ—

ମାଘ କାବ୍ୟେ ଯିବା ରହିଛି ଶହେ ଆପ ଶବଦ,
ଭାରବୀଙ୍କ କାବ୍ୟେ ଏସନ ତିନି ଶହ ଶବଦ,
ଅଗଣିତ ପୁରି ରହିଛି କାଳିଦାସ ଲେଖାରେ,
କବି ଶତଞ୍ଜୟଙ୍କ ଏକ ହିଁ କିଏ ନ ଜାଣେ ଭଲେ ?

ଭାବାର୍ଥ—(ଆପ ଶବଦ = 'ଜଳ' ପଦ ଅର୍ଥାତ୍ ଜଳର ନାମ) ମାଘ କବିଙ୍କୁ ଜଳର ଶହେଟି ନାମ ଜଣାଅଛି । ଭାରବୀଙ୍କୁ ଜଳର ତିନିଶହେ ନାମ ଜଣାଅଛି । କାଳିଦାସ ଜଳର ଏତେ ନାମ ଜାଣନ୍ତି ଯେ, ତାହା ଗଣାଯାଇପାରିବ ନାହିଁ । କିନ୍ତୁ କବି ଶତଞ୍ଜୟଙ୍କୁ ଜଳର କେବଳ ଗୋଟିଏ ନାମ ଜଣାଅଛି ଅର୍ଥାତ୍ ତାଙ୍କୁ ଅନ୍ୟ ନାମ ଜଣାନାହିଁ ।

ଶ୍ଳୋକଟି ଶୁଣି ସଭାର ପଣ୍ଡିତମାନେ ହୋ-ହୋ ହୋଇ ହସିବାକୁ ଲାଗିଲେ । ନିଜେ ରାଜା ବି ନହସି ରହିପାରିଲେ ନାହିଁ । ଶ୍ଳୋକରୁ ଜଣାଗଲା, ଶତଞ୍ଜୟ ନିଜେ ସ୍ୱୀକାର କରୁଛନ୍ତି ଯେ, ଅନ୍ୟ ସବୁ କବି ବିଶେଷତଃ କାଳିଦାସଙ୍କ ତୁଳନାରେ ସେ କିଛି ନୁହନ୍ତି । କାଳିଦାସ ସୂର୍ଯ୍ୟ ହେଲେ, ସେ ଜୁଳୁଜୁଳିଆ ପୋକ ।

ସଭାରେ ଗୁରୁଙ୍କର ଅପମାନ ସହିନପାରି ଶିଷ୍ୟ ସେହିକ୍ଷଣି ସେ ସ୍ଥାନ ଛାଡ଼ି ଚାଲିଗଲା । ସେ ଗୁରୁଙ୍କ ଆଗରେ ସବୁ କଥା ଗୋଟି ଗୋଟି କରି କହିଲା । ଶତଞ୍ଜୟ ବୁଝିପାରିଲେ ଯେ, କାଳିଦାସ ହିଁ ବାଟରେ ତାଙ୍କର ଶିଷ୍ୟଙ୍କୁ ଅଟକାଇ ଏ କାଣ୍ଡ କରିଛନ୍ତି । ସେ କାଳିଦାସଙ୍କୁ ଅପମାନ ଦେବେ କ'ଣ, ଓଲଟି ନିଜେ ଅପମାନ ପାଇ କାନମୁଣ୍ଡ ଆଉଁସି ଚୁପ୍ ରହିଲେ । ଯେମିତି କାମ କଲେ, ସେମିତି ଫଳ ପାଇଲେ । କଥାରେ ଅଛି ପରା—"ଯେସାକୁ ତେସା, ହାରାମଜାଦାକୁ ଟାଙ୍ଗିଆ ପଶା ।"

— ୦ —

# ଜାତ ଚହ୍ଲଟ

ରାଜା ଭୋଜ ବଦ୍ୟାର ଆଦର କରୁଥିଲେ । ସେ ବଭିନ୍ନ ରାଜ୍ୟରୁ ବଡ଼ ବଡ଼ ପଣ୍ଡିତଙ୍କୁ ଡକାଇ ତାଙ୍କର ରାଜସଭାରେ ନିଯୁକ୍ତ କରିଥିଲେ । ତାଙ୍କର ରାଜସଭାରେ ଚଉଦ ଶହ ଧୁରନ୍ଧର ପଣ୍ଡିତ ଥିଲେ । ସେମାନେ ରାଜାଙ୍କଠାରୁ ମାସିକ ବେତନ ପାଉଥିଲେ । ତାହାଛଡ଼ା ଅନେକ ସମୟରେ ସେମାନଙ୍କର ପାଣ୍ଡିତ୍ୟ ଓ ବୁଦ୍ଧି ଯୋଗୁଁ ପୁରସ୍କାର ପାଉଥିଲେ । ସେମାନଙ୍କ କାମ ଥିଲା ରାଜାଙ୍କ ଆଗରେ ଶାସ୍ତ୍ର ଆଲୋଚନା କରିବା ଏବଂ ଅନ୍ୟ ରାଜ୍ୟରୁ ଆସିଥିବା ପଣ୍ଡିତମାନଙ୍କ ସହିତ ଶାସ୍ତ୍ରଚର୍ଚ୍ଚା କରି ଜୟଲାଭ କରିବା । କାଳିଦାସ ସେହି ଚଉଦଶହ ପଣ୍ଡିତଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ ।

ସେ ସମୟରେ ଦକ୍ଷିଣାବର୍ତ୍ତ ନଗରର ରୁଚିହିକୃଷ୍ଣ ବଦ୍ୟାଶିକ୍ଷା କରିବା ପାଇଁ କାଶୀ ଯାଇଥିଲେ । ସେଠାରେ ପାଞ୍ଚବର୍ଷ ରହି ପାଣ୍ଡିତ୍ୟ ଲାଭ କଲେ । ତା'ପରେ ସେମାନେ ଅନେକ ରାଜ୍ୟକୁ ଯାଇ ରାଜସଭାର ପଣ୍ଡିତମାନଙ୍କ ସହିତ ଶାସ୍ତ୍ରଚର୍ଚ୍ଚା କରିବାକୁ ଲାଗିଲେ । ସେମାନେ ନାନା ଶାସ୍ତ୍ରରେ ନିପୁଣ ଥିଲେ । ତେଣୁ ସଭାପଣ୍ଡିତମାନଙ୍କୁ ପରାସ୍ତ କରି ରାଜା-ମାନଙ୍କଠାରୁ ବହୁତ ଧନରତ୍ନ ପାଇଥିଲେ । ସେତେବେଳେ ସାରା-ଭାରତରେ ଭୋଜଙ୍କ ରାଜସଭାର ନାଁ ଥିଲା । ତେଣୁ ଚାରି କୁମାର ଶାସ୍ତ୍ରଚର୍ଚ୍ଚା କରିବାପାଇଁ ଧାରାନଗରୀକୁ ଆସିଲେ ।

ସେମାନେ ଧାରାନଗରୀରେ ଗୋଟିଏ ସୁନ୍ଦର କୋଠାଘର ଭଡ଼ା ନେଇ ରହିଲେ । ଏହାପରେ ଦିନେ ସେମାନେ ରାଜସଭାକୁ ଯାଇ ରାଜାଙ୍କୁ ସେମାନଙ୍କ ଅଭିପ୍ରାୟ ଜଣାଇଲେ । ସେମାନେ କହିଲେ—"ମହାରାଜ, ଆମ୍ଭେମାନେ ଅନେକ ରାଜ୍ୟରେ ବଡ଼ ବଡ଼ ପଣ୍ଡିତଙ୍କୁ ପରାସ୍ତ କରିଆସିଛୁ ।

ଆପଣଙ୍କ ସଭାପଣ୍ଡିତମାନେ ଅତି ବିଦ୍ୱାନ୍ ବୋଲି ଆମେ ଶୁଣିଅଛୁଁ । ସେମାନଙ୍କ ସହିତ ଶାସ୍ତ୍ରଚର୍ଚ୍ଚା କରିବା ଉଦ୍ଦେଶ୍ୟରେ ଆମ୍ଭେମାନେ ଏଠାକୁ



[ ଭୋଜ ରାଜସଭାରେ ସ୍ୱର କୁମାରୀ କନ୍ୟା ]

ଆସିଅଛୁଁ । କିନ୍ତୁ ତାହା ଆଗରୁ ଆମେ ଗୋଟିଏ ଅତି ସାଧାରଣ ପ୍ରଶ୍ନ ପଚାରିବୁ । ତା'ର ଠିକ୍ ଉତ୍ତର ଯେ ଦେବେ, ଆମେ ତାଙ୍କ ସହିତ ଶାସ୍ତ୍ରଚର୍ଚ୍ଚା କରିବୁ ।

ଏହା ଶୁଣି ରାଜା ପ୍ରଶ୍ନ ପଚାରିବାକୁ କହିଲେ । ତହୁଁ ସେମାନଙ୍କ ମଧ୍ୟରୁ ଜଣେ କହିଲା "ମହାରାଜ, ଆମ ଚାରିଜଣଙ୍କର ବୟସ ଓ ରୂପ ସମାନ । କିନ୍ତୁ ଆମେ ଚାରିଭଉଣୀ ନୋହୁଁ । ଆମ୍ଭମାନଙ୍କର ଜାତି ଭିନ୍ନ ଭିନ୍ନ । ଆମ୍ଭମାନଙ୍କୁ କୌଣସି ପ୍ରଶ୍ନ ନପଚାରି କିଏ କି ଜାତିର କହିବାକୁ ପଡ଼ିବ ।"

ଚାରି କୁମାରୀଙ୍କୁ ଦେଖି ରାଜା ଓ ସଭାର ପଣ୍ଡିତମାନେ ଅବାକ୍ ହୋଇଗଲେ । ସେମାନଙ୍କ ବୟସ, ଚେହେରା, ଚାଲିଚଳନ, ହାବଭାବ ସବୁ ଏକପ୍ରକାର ଥିଲା । ଦେଖିଲେ ମନେ ହେଉଥିଲା, ସେମାନେ ଯେମିତି ଚାରିଯାଆଁଳା ଭଉଣୀ । ରାଜା ସେମାନଙ୍କ କଥା ଶୁଣି କହିଲେ—"ହଉ, ଆପଣମାନେ ରାଜ ଅତିଥି ରୂପେ ରହନ୍ତୁ । ଏକ ସପ୍ତାହ ଭିତରେ ଆପଣଙ୍କ ପ୍ରଶ୍ନର ଉତ୍ତର ଦିଆଯିବ ।"

ଏହାପରେ ଚାରି କୁମାରୀ ରାଜାଙ୍କ ଅତିଥି ଭବନରେ ରହିଲେ । ଏଣେ ରାଜା ପଣ୍ଡିତମାନଙ୍କୁ କହିଲେ—"ଆଜିଠାରୁ ସାତଦିନ ଭିତରେ ଚାରି କୁମାରୀଙ୍କ ଜାତି ଠିକ୍ ରୂପେ କହିବ, ନଚେତ୍ ତୁମ୍ଭମାନଙ୍କର ଘର ଲୁଟିକରି ତୁମ୍ଭମାନଙ୍କୁ ଏ ରାଜ୍ୟରୁ ତଡ଼ି ଦିଆଯିବ । ଏତେ ଏତେ ପଣ୍ଡିତଙ୍କୁ ଯଦି ଚାରି ଝିଅ ଚାରିଟା ପରାସ୍ତ କରିବେ, ତେବେ ହାତୀ ପୋଷିଲା ପରି ତୁମ୍ଭମାନଙ୍କୁ ପୋଷି ଲାଭ କ'ଣ ?"

ରାଜାଙ୍କ ଧମକଚମକ ଶୁଣି ପଣ୍ଡିତମାନେ ମୁଣ୍ଡରେ ହାତ ଦେଇ ବସିଲେ । କିଏ କି ଜାତିର କିମିତି ବା ଜଣାଯିବ ? ସେଦିନ ସଭା ଭାଙ୍ଗିଲା ପରେ ପଣ୍ଡିତମାନେ ମନଦୁଃଖରେ ଘରକୁ ଫେରିଲେ, ଏହିପରି ଦିନ ପରେ ଦିନ ବିତିବାକୁ ଲାଗିଲା । ପଣ୍ଡିତମାନେ ଡରରେ ରାଜସଭାକୁ ଆସୁନଥାନ୍ତି । ଛ'ଦିନ ଶେଷ ହୋଇ ଯେମିତି ସାତଦିନ ହେଲା, ପଣ୍ଡିତମାନେ ଭାବିଲେ ଯେ ସେମାନଙ୍କର ଆଉ ରକ୍ଷା ନାହିଁ । ରାଜ୍ୟରୁ ତଡ଼ାଯିବା ଆଗରୁ ନିଜେ ନିଜେ ଚାଲିଯିବା ପାଇଁ ସେମାନେ ପ୍ରସ୍ତୁତ ହେଲେ ।

ଏଣେ କାଳିଦାସ ଭାବିଲେ—"ମୁଁ ଥାଉ ଥାଉ ଯଦି ବଙ୍ଗର ଚଉଦଶହ ପଣ୍ଡିତ ଭାଜିଯିବେ, ଆଉ ଏ ଭାଗ୍ୟ କୁମାରୀ ଆମ୍ଭମାନଙ୍କ ମୁହଁରେ ଚୂନକାଳି ବୋଳିବେ, ତେବେ ଏ ଜୀବନରେ କି ପ୍ରୟୋଜନ ? ଏହାଭାବି ସେ ତାଙ୍କର ପୂଜାଘରକୁ ଯାଇ କାଳୀଙ୍କୁ ସ୍ତୁତିକଲେ । କାଳୀ ତାଙ୍କ ଉପରେ ପ୍ରସନ୍ନ ହୋଇ କହିଲେ—"ଯାଅ ବତ୍ସ, ତୋର ମନସ୍କାମନା ସିଦ୍ଧ ହେବ ।"

ସପ୍ତମଦିନ କାଳିଅନ୍ଧାରରୁ ଉଠି କାଳିଦାସ ଭାଗ୍ୟ କୁମାରୀଙ୍କ ରହିବା ଘର ନିକଟରେ ପହଞ୍ଚିଲେ । ସେ ପ୍ରଥମେ ଘରର ଚାରିଆଡ଼େ ଟିକିଏ ଆଖିବୁଲାଇ ଆଣିଲେ । ସେହି ଘରର ପଛପଟ ଝରକା ଖୋଲିଥାଏ । କାଳିଦାସ ଝରକାରେ ଉଙ୍କିମାରି ଦେଖିଲେ ଭାଗ୍ୟ କୁମାରୀ ଶୋଇଛନ୍ତି ।

ଦେଖୁ ଦେଖୁ ପୂର୍ବ ଦିଗରେ ସିନ୍ଦୂର ଫାଟିଲା । କାଳିଦାସ ବନ୍ଧା ଉପରେ ଠିଆହୋଇ ଭଗବାନଙ୍କ ସ୍ତୁତିଗାନ କରିବାକୁ ଲାଗିଲେ । ତାଙ୍କର ପାଟି ଶୁଣି ଗୋଟିଏ ଝିଅର ନିଦ ଭାଙ୍ଗିଗଲା । ସେ ଶେଯ ଉପରେ ବସିପଡ଼ି ପୂର୍ବଦିଗକୁ ଚାହିଁ ସୂର୍ଯ୍ୟଙ୍କୁ ସ୍ତୁତିକଲା—

**"ଅଭ୍ରଭ୍ରତ୍‌ପ୍ରାଚୀ ପିଙ୍ଗା ରସପତି ରିବ ପ୍ରାଶ୍ୟ କନକଂ"**

ଭାବାନୁବାଦ—

ହଳଦିଆ ଦିଶେ ପୂ ର୍ବ ଦିଗ
ପାରଦେ କି ଅବା କନକ ଯୋଗ ।

ଭାବାର୍ଥ – ପାରଦରେ ସୁନା ମିଶିଲେ ଯେପରି ତାହା ହଳଦିଆ ଦେଖାଯାଏ, ସୂର୍ଯ୍ୟୋଦୟ ଯୋଗୁଁ ପୂର୍ବ ଆକାଶ ସେହିପରି ହଳଦିଆ ଦେଖାଯାଉଅଛି ।

ପ୍ରଥମ କୁମାରୀ ସୁନାର ତୁଳନା ଦେବାରୁ କାଳିଦାସ ଜାଣିଲେ ଯେ ଏ ନିଶ୍ଚୟ ବଣିଆଘରର ଝିଅ ।

ଏହାପରେ ଦ୍ୱିତୀୟ କୁମାରୀ ବସି ଗାଇଲା—

**"ଗତଚ୍ଛାୟଶ୍ଚନ୍ଦ୍ରୋ ବୁଧଜନ ଇବ ଗ୍ରାମ୍ୟ ସଦସି"**

ଭାବାନୁବାଦ —

ଚନ୍ଦ୍ର ତେଜ କାହିଁ ଗଲା ମଉଳି,
ମୂରୁଖ ସଭାରେ ପଣ୍ଡିତ ଭଳି ।

ଭାବାର୍ଥ – ମୂର୍ଖଙ୍କ ସଭାରେ ପଣ୍ଡିତର ପାଣ୍ଡିତ୍ୟ ଯେପରି ଫିକା ପଡ଼ିଯାଏ, ସେହିପରି ସୂର୍ଯ୍ୟ ଉଦିତ ହେବାରୁ ଚନ୍ଦ୍ରର ତେଜ ମଉଳିଗଲା ।

ଦ୍ୱିତୀୟ କୁମାରୀ ପଣ୍ଡିତର ତୁଳନା ଦେବାରୁ କାଳିଦାସ ଠିକ୍ କଲେ ଯେ, ଏ ନିଶ୍ଚୟ ବ୍ରାହ୍ମଣଘର ଝିଅ ।

ତା'ପରେ ତୃତୀୟ କୁମାରୀ ଗାଇଲା—

**"କ୍ଷଣାତ୍କ୍ଷୀଣାସ୍ତାରା ନୃପତୟ ଇବା ନୁଦ୍ୟମପରା"**

ଭାବାନୁବାଦ —

ତାରା ସବୁ ହେଲେ ଆକାଶେ କ୍ଷୀଣ,
ଅଳସୁଆ ରାଜା ହୁଏ ଯେସନ ।

ଭାବାର୍ଥ—ଅଳସୁଆ ହେଲେ ରଜା ଯେପରି ତାହାର ଆଧିପତ୍ୟ ହରାଏ, ସେହିପରି ସୂର୍ଯ୍ୟୋଦୟ ହୁଅନ୍ତେ ଆକାଶରେ ତାରାସବୁ ଲୁଚିଗଲେ । ତୃତୀୟ କୁମାରୀ ରାଜାର ତୁଳନା ଦେବାରୁ କାଳିଦାସ ବୁଝିପାରିଲେ ଯେ, ସେ କ୍ଷତ୍ରିୟ କନ୍ୟା ।

ଶେଷରେ ଚତୁର୍ଥ କୁମାରୀ ଗାଇଲା—

**"ନ ରାଜନ୍ତେ ଦୀପା ଦ୍ରବିଣ ରହିତା ନାମିବ ଗୃହାଃ"**

ଭାବାନୁବାଦ —

ଦୀପର ଆଲୁଅ ହୋଇଲା ହୀନ,
ଦରବ ବିହୁନେ ଘର ଯେସନ ।

ଭାବାର୍ଥ – ସୂର୍ଯ୍ୟୋଦୟ ହୁଅନ୍ତେ ଦୀପ-ଆଲୁଅର ଶୋଭା ରହିଲା ନାହିଁ, ଯେପରି ଧନ ଦ୍ରବ୍ୟର ଅଭାବରେ ଘର ଶୋଭାପାଏ ନାହିଁ ।

ଚତୁର୍ଥ କୁମାରୀ ଧନ ଦ୍ରବ୍ୟର ତୁଳନା ଦେବାରୁ କାଳିଦାସ ବୁଝିନେଲେ ଯେ, ସେ ବଣିକ କନ୍ୟା ।

ସପ୍ତମଦିନ ରାଜସଭାକୁ ଯାଇ କାଳିଦାସ ଚାରି କୁମାରୀଙ୍କ ଆଗରେ ସେମାନଙ୍କ ଜାତି ନିର୍ଣ୍ଣୟ ସବୁ କହିଲେ । ତାହା ଶୁଣି ଚାରି କୁମାରୀ ଭାରି ଖୁସି ହେଲେ ଏବଂ କାଳିଦାସଙ୍କୁ କେତୋଟି ପ୍ରଶ୍ନ ପଚାରିଲେ । କାଳିଦାସ ସେସବୁର ଉପଯୁକ୍ତ ଉତ୍ତର ଦେଲେ । ଏହାପରେ ଚାରି କୁମାରୀ କାଳିଦାସଙ୍କ ଗୋଡ଼ତଳେ ମୁଣ୍ଡିଆ ମାରି ରାଜାଙ୍କଠାରୁ ଉପହାର ନେଇ ନିଜ ରାଜ୍ୟକୁ ଫେରିଗଲେ ।



# ଶୋକ କବିତା

ରାଜା ଭୋଜ କାଳିଦାସଙ୍କୁ ଭାରି ଶ୍ରଦ୍ଧା କରୁଥିଲେ । କାଳିଦାସ ପ୍ରତିଦିନ ନୂଆ ନୂଆ ଶ୍ଳୋକ ଶୁଣାଇ ରାଜାଙ୍କ ମନକୁ ଖୁସି କରୁଥାନ୍ତି । ଦିନେ ରାଜାଙ୍କ ମନରେ ଏକ କୌତୁକିଆ ପ୍ରଶ୍ନ ଉଠିଲା । ସେ କାଳିଦାସଙ୍କୁ କହିଲେ—"ତୁମଠାରୁ ସବୁବେଳେ ଏକ ପ୍ରକାର ଶ୍ଳୋକ ଶୁଣି ଶୁଣି ମୋତେ ଭାରି ବିରକ୍ତ ଲାଗିଲାଣି । କିଛି ନୂଆ ପ୍ରକାର କବିତା ଶୁଣିବାକୁ ମୋର ଭାରି ଆଗ୍ରହ ହେଉଛି । କ'ଣ ଶୁଣାଇବ ?"

କାଳିଦାସ କହିଲେ—"ହଁ, ମହାରାଜ ଆପଣ ଅନୁମତି ଦେଲେ ଶୁଣାଇବି । କହନ୍ତୁ କି ପ୍ରକାର କବିତା ଶୁଣାଇବି ?

ରାଜା—ଏକ ଶୋକ କବିତା ଶୁଣିବାକୁ ମୋର ଭାରି ଇଚ୍ଛା ।

କାଳିଦାସ—କ'ଣ, ରତି-ବିଳାପ, ଯଶୋଦା-ବିଳାପ ପରି କବିତା ?

ରାଜା– ଧେତ୍, ସେସବୁ ପୁରୁଣା କବିତା ମୋର ଶୁଣିବାକୁ ଇଚ୍ଛା ନାହିଁ । ଏଇ ମନେକର, ମୁଁ ମରିଗଲି । ମୋର ମୃତ୍ୟୁରେ ଶୋକ କରି ଏକ କବିତା ରଚନା କର ।

ଏହା ଶୁଣି କାଳିଦାସଙ୍କ ମୁହଁ ଫିକା ପଡ଼ିଗଲା । ସେ ରାଜାଙ୍କୁ କିଛି ନକହି ମୁଣ୍ଡପୋତି ବସି ରହିଲେ । ରାଜା ପୁଣି କହିଲେ— "ଏମିତି ଗୁମ୍‌ମାରି ବସିଲ କାହିଁକି, କାଳିଦାସ ? ଶୁଣାଅ ନା ଏକ ଶୋକ କବିତା ।"

କାଳିଦାସ – ନା ମହାରାଜ, ଏ ପ୍ରକାର ଅଶୁଭ କଥା ମୋ ପାଟିକୁ ଆସିବ ନାହିଁ । କ୍ଷମା କରନ୍ତୁ, ମୁଁ ପାରିବ ନାହିଁ ।

ରାଜା – ନା, ଆଜ ତୁମକୁ ଏମିତ କବିତାଟିଏ ଶୁଣାଇବାକୁ ପଡ଼ିବ ।

କାଳିଦାସ ଆଉ କିଛି ନକହି ଉଠି ଠିଆହେଲେ ଏବଂ କାହାକୁ କିଛି ନକହି ଧୀରେ ଧୀରେ ଘରକୁ ଚାଲିଗଲେ । ସେ ଠିକ୍ କଲେ, ଧାରାନଗରୀ ଛାଡ଼ି ଚାଲିଯିବେ । ଯେଉଁ ରାଜାଙ୍କର ଅନ୍ନ ଜଳ ଖାଇ ସେ ବଞ୍ଚିଛନ୍ତି, ତାଙ୍କର ଅଶୁଭ କଥା ମୁହଁରେ ଧରିବେ ବା କମିତ ? ତେଣୁ ସେ ତା' ପରଦିନ ଧାରାନଗରୀ ଛାଡ଼ି ଚାଲିଗଲେ ।

କାଳିଦାସ ଚାଲିଗଲାରୁ ଭୋଜଙ୍କୁ ଆଉ କିଛି ଭଲ ଲାଗିଲା ନାହିଁ । ସେଦିନ ରାତିରେ ଖାଲି ତାଙ୍କ କଥା ଭାବିବାକୁ ଲାଗିଲେ । ଶେଷରେ ସେ ତାଙ୍କର ପ୍ରଧାନମନ୍ତ୍ରୀଙ୍କୁ ରାଜ୍ୟ ଶାସନର ଭାର ଦେଇ ବାବାଜି ବେଶରେ କାଳିଦାସଙ୍କୁ ଖୋଜିବା ପାଇଁ ବାହାରି ପଡ଼ିଲେ । ଅନେକ ଦିନ ଏଣେ-ତେଣେ ବୁଲି ବୁଲି ଶେଷରେ ସେ ଗୋଟିଏ ଗାଁରେ ପହଞ୍ଚିଲେ । ସେହି ଗାଁର ମନ୍ଦିରରେ ସେ କାଳିଦାସଙ୍କୁ ଦେଖିଲେ । କାଳିଦାସ ତାଙ୍କୁ ଜଣେ ବାବାଜି ମନେକରି ବସିବାକୁ ଆସନ ଦେଲେ । ତା'ପରେ ସେ ପଚାରିଲେ —"ମହାଶୟ, ଆପଣଙ୍କ ଘର କେଉଁଠି ?"

ରାଜା — ବାବାଜିର ଘରଦୁଆର କଥା ପଚାରୁଛ କ'ଣ ବାବା ? ସାରା ଦୁନିଆ ମୋର ଘର । ମୁଁ ଯେଉଁଦିନ ଯେଉଁଠି ରହେ, ସେଦିନ ମୋର ଘର ସେଇଠି ।

କାଳିଦାସ — ତେବେ ଆପଣ କେଉଁଠାରୁ ଆସିଲେ ?

ରାଜା — ମୁଁ ଧାରାନଗରୀରୁ ଆସିଲି ।

କାଳିଦାସ – ଧାରାନଗରୀର କ'ଣ ସବୁ କୁଶଳ ତ ?

ରାଜା — କୁଶଳ ଆଉ କ'ଣ ? ଧାରାନଗରୀ ଉପରେ ବର୍ତ୍ତମାନ ମହାବିପଦ ପଡ଼ିଛି । ରାଜା ଭୋଜ ତ ଏ ସଂସାର ଛାଡ଼ି ସ୍ୱର୍ଗବାସୀ ହୋଇଗଲେ ।

ଭୋଜରାଜାଙ୍କ ମୃତ୍ୟୁ ଖବର ଶୁଣି କାଳିଦାସ ସଙ୍ଗେ ସଙ୍ଗେ ମୂର୍ଚ୍ଛା ହୋଇଗଲେ । ରାଜା ତାଙ୍କ ମୁହଁରେ ପାଣିଛିଞ୍ଚି ଚେତା କରାଇଲେ ।



[ ଭୋଜରାଜାଙ୍କ ମୃତ୍ୟୁ ଖବର ଶୁଣି କାଳିଦାସ ଅଚେତ ]

ହାୟରେ କାଳିଦାସଙ୍କ ମୁହଁରୁ ଶୋକ-କବିତା ଛୁଏଁ ବାହାରି ପଡ଼ିଲା ।
ଗାଇଲେ —

**ଅଦ୍ୟ ଧାରା ନିରାଧାରା ନିରାଲମ୍ବା ସରସ୍ୱତୀ**
**ପଣ୍ଡିତାଃ ଖଣ୍ଡିତା ସର୍ବେ ଭୋଜରାଜେ ଦିବଂ ଗତେ ।**

ଭାବାନୁବାଦ—

ଧାରା ନାଆଁ ଧରା ନଧରେ
ବାଣୀ ବୁଲନ୍ତି ବଣେ,
କବିତା ତେଜିଲେ କବିଏ
ଭୋଜରାଜ ମରଣେ ।

ଭାବାର୍ଥ—ରାଜା ଭୋଜ ମରିଯିବାରୁ ପୃଥିବୀ ଆଉ ଧାରାନଗରୀର ନାଁ ଧରୁନାହିଁ । ସରସ୍ୱତୀ ଧାରାନଗରୀ ଛାଡ଼ି ବଣରେ ବୁଲୁଛନ୍ତି ଏବଂ କବିମାନେ କବିତା ଲେଖା ଛାଡ଼ିଦେଲେଣି ।

କାଳିଦାସଙ୍କର ତାଙ୍କ ପ୍ରତି ଏତେ ସ୍ନେହ ଥିବା ଦେଖି ରାଜା ମନେ ମନେ ଭାରି ଖୁସିହେଲେ । ଏହାପରେ ସେ ବାବାଜି ବେଶ ବଦଳାଇ ରାଜପୋଷାକ ପିନ୍ଧିଲେ । ଏତେଦିନ ପରେ ତାଙ୍କର ଇଚ୍ଛା ପୂରଣ ହେଲା; ସେ କାଳିଦାସଙ୍କ ମୁହଁରୁ ଶୋକ କବିତା ଶୁଣିପାରିଲେ ।

ଆଖିଆଗରେ ରାଜା ଭୋଜଙ୍କୁ ଦେଖି କାଳିଦାସ ମନେ ମନେ ଲଜ୍ଜିତ ହେଲେ । ସେ କହିଲେ—"ମହାରାଜ, କହିବାରେ ମୋର ଟିକିଏ ଭୁଲ୍ ରହିଗଲା । ମୁଁ ଏଇଆ କହିବାକୁ ଚାହୁଁଥିଲି —

**ଅଦ୍ୟଧାରା ସଦାଧାରା ସଦାଲମ୍ବା ସରସ୍ୱତୀ**
**ପଣ୍ଡିତାଃ ମଣ୍ଡିତାଃ ସର୍ବେ ଭୋଜରାଜେ ଭୁବଂ ଗତେ ।**

ଭାବାନୁବାଦ –

ଧାରା ନାଆଁ ଧରା ଅଧରେ
ବାଣୀ ବାଆନ୍ତି ବୀଣା,
କବିତା ରଚନ୍ତି କବିଏ
ଭୋଜରାଜ ମହିମା ।

ଭବାର୍ଥ—ଭୋଜରାଜ ହୋଇଥିବାରୁ ପୃଥିବୀ ଧାରାନଗରୀର ନାଁ ଘୋଷି ଦେଉଛି । ସରସ୍ୱତୀ ବୀଣା ବଜାଉଛନ୍ତି ଏବଂ କବିମାନେ କବିତା ରଚନା କରୁଅଛନ୍ତି ।

କାଳିଦାସଙ୍କର ଏ ପ୍ରକାର ଅଦ୍ଭୁତ କବିତ୍ୱ ଦେଖି ରାଜା ଭାରି ପ୍ରସନ୍ନ ହୋଇଗଲେ । ତା'ପରେ ସେ କାଳିଦାସଙ୍କୁ ସାଙ୍ଗରେ ନେଇ ମହାଆନନ୍ଦରେ ଧାରାନଗରୀକୁ ଫେରିଗଲେ ।

—୦—

# ଠକ ଠକି ହୋଇଗଲା

କାଳିଦାସଙ୍କ ସମୟରେ ଦକ୍ଷିଣ ଭାରତରେ କର୍ଣ୍ଣାଟ ନାମକ ଏକ ରାଜ୍ୟ ଥିଲା । କର୍ଣ୍ଣାଟର ରାଜା ନିଜେ ବିଦ୍ୱାନ୍ ଥିଲେ ଏବଂ ପଣ୍ଡିତମାନଙ୍କୁ ଉପଯୁକ୍ତ ପୁରସ୍କାର ଦେଉଥିଲେ । ତାଙ୍କର ରାଜସଭାରେ ବଲ୍ଲିନ ନାମକ କବି ଥିଲେ । ସେ ନିଜକୁ ଜଣେ ଭାରି ବଡ଼ କବି ବୋଲି ପ୍ରଚାର କରୁଥିଲେ । କିନ୍ତୁ ସେ ପ୍ରକୃତରେ ସେପରି ବଡ଼ କବି ନଥିଲେ । ସେ ଭାରି କୌଶଳୀ ଥିଲେ । କର୍ଣ୍ଣାଟ ରାଜସଭାକୁ କୌଣସି କବି ଯିବାକୁ ଇଚ୍ଛା କଲେ, ପ୍ରଥମେ ତାଙ୍କୁ ଖୁସାମଦ କରିବାକୁ ପଡୁଥିଲା । ଛୋଟ ଧରଣର କବିମାନଙ୍କୁ ସେ ରାଜସଭାକୁ ନେଇଯାଉଥିଲେ । ସେଠାରେ ବଲ୍ଲିନ ସେମାନଙ୍କୁ ସହଜରେ ପରାସ୍ତ କରିଦେଉଥିଲେ । ତା' ପରେ ରାଜାଙ୍କଠାରୁ ସେମାନଙ୍କ ପାଇଁ କିଛି ପୁରସ୍କାର ବ୍ୟବସ୍ଥା କରି ଦେଉଥିଲେ ।

କର୍ଣ୍ଣାଟ ରାଜସଭାକୁ କୌଣସି ବଡ଼ କବିଙ୍କୁ ବଲ୍ଲିନ ଯିବାକୁ ଦେଉନଥିଲେ । ସେ ନାନା କୌଶଳ କରି ତାଙ୍କୁ ରାଜାଙ୍କ ସହିତ ସାକ୍ଷାତ କରାଇ ଦେଉନଥିଲେ । ଏହିପରି ରାଜସଭାରେ ନିଜର ବାହାଦୁରି ଦେଖାଇ ସେ ରାଜାଙ୍କଠାରୁ ସମ୍ମାନ ଓ ପୁରସ୍କାର ପାଉଥିଲେ ।

ସତ କଥା କେତେଦିନ ବା ଲୁଚି ରହିବ ? ବଲ୍ଲିନଙ୍କ ଠକାମି ବିଷୟରେ କାଳିଦାସ ସବୁକଥା ଶୁଣିପାରିଲେ । ସେ ବଲ୍ଲିନଙ୍କ ବଡ଼ାଇ ଭାଙ୍ଗିବା ପାଇଁ ମନେ ମନେ ଠିକ୍ କଲେ । ଦିନେ ସେ ଭୋଜଙ୍କଠାରୁ ଛୁଟି ନେଇ କର୍ଣ୍ଣାଟ ଅଭିମୁଖେ ଯାତ୍ରା କଲେ ।

କର୍ଣ୍ଣାଟ ରାଜଧାନୀରେ ପହଞ୍ଚି କାଳିଦାସ ସିଧା ବଲ୍ଲନ କବିଙ୍କ ଘରକୁ ଗଲେ । ସେଠାରେ ସେ ନିଜକୁ କାଳିଦାସ ବୋଲି ପରିଚୟ ଦେଲେନାହିଁ । ରାଜାଙ୍କ ସହିତ ସାକ୍ଷାତ୍ କରାଇ ଦେବାପାଇଁ ସେ ବଲ୍ଲନଙ୍କୁ ଅନୁରୋଧ କଲେ । ବଲ୍ଲନ ଭାବିଲେ—"ଏ କେମିତିକା କବି ପ୍ରଥମେ ପରୀକ୍ଷା କରି ଦେଖିବା ଦରକାର ! ଯଦି ଏ ବଡ଼ କବି ହୋଇଥିବ, ତେବେ ରାଜସଭାକୁ ନେଲେ ମୋତେ ପରାସ୍ତ କରିଦେବ ।" ସେ କାଳିଦାସଙ୍କୁ କହିଲେ —"ତୁମେ ଆଜି ଆମ ଘରେ ରହ । କାଲି ସକାଳେ ରାଜାଙ୍କୁ ଦେଖା କରିବା ।"

କାଳିଦାସ ସେଦିନ ବଲ୍ଲନଙ୍କ ଘରେ ରହିଲେ । ତା' ପରଦିନ ସକାଳେ ବଲ୍ଲନ କାଳିଦାସଙ୍କୁ କହିଲେ—"ଆଚ୍ଛା, ବର୍ତ୍ତମାନ ସକାଳ ହୋଇଅଛି । ସକାଳ ବିଷୟରେ ଏକ କବିତା ଶୁଣାଇଲ ଦେଖି ।"

କାଳିଦାସ ଭାବିଲେ –"ଭଲ କବିତାଟିଏ ଶୁଣାଇଲେ ଏ ମୋତେ କଦାପି ରାଜାଙ୍କ ପାଖକୁ ନେବ ନାହିଁ । ତେଣୁ ସେ ଏକ ଅତି ବାଜେ ଧରଣର କବିତା ଶୁଣାଇଲେ ।" ତା'ର ଓଡ଼ିଆ ଅନୁବାଦ ଏହି—

ସକାଳ ହେଲା ଉଠିଲେ ରାଜା
ଧୋଇଲେ ହାତ ମୁହଁ
ଗଛ ଉପରେ ବସି କୁକୁଡ଼ା
ଡାକେ କକ୍କ-କଅ ।

ଏହିପରି ଏକ ବାଜେ କବିତା ଶୁଣି ବଲ୍ଲନ ଠୋ ଠୋ ହୋଇ ହସିବାକୁ ଲାଗିଲେ । ତା' ପରେ ସେ କବିତାକୁ ତାଳପତ୍ରରେ ଲେଖି ରଖିଲେ ।

ସେମାନେ ଯାଉଯାଉ ବାଟରେ ଗୋଟିଏ ଷଣ୍ଢ ଚରୁଥିବାର ଦେଖିଲେ । ବଲ୍ଲନ କାଳିଦାସଙ୍କୁ କହିଲେ –"ଏହି ଷଣ୍ଢ ବିଷୟରେ ଗୋଟିଏ କବିତା ରଚନା କର ।"

କାଳିଦାସ ପୁଣି ଏକ ନିକୃଷ୍ଟ ଧରଣର କବିତା ଶୁଣାଇଲେ । ତାହାର ଓଡ଼ିଆ ଅନୁବାଦ ଏହି –

ଗାଈ ଛୁଆ ଏହୁ ବୋଲାଏ ଷଣ୍ଢ,
ଖାଏ ଘାସ ପାଳ ମେଲି ତା' ତୁଣ୍ଡ,
ପଛରେ ଅଛି ତା' ଲାଞ୍ଜ ଗୋଟିଏ,
ଆବର ଅଛଇ ଶିଙ୍ଗ ଯୋଡ଼ିଏ ।

ବର୍ତ୍ତମାନ ବଲ୍ଲନ ବୁଝିପାରିଲେ ଯେ, ଲୋକଟି ନିହାତି ସାଧାରଣ, କବିତା କ'ଣ ଏହାଙ୍କୁ ଜଣାନାହିଁ । ସେ ଭାବିଲେ – "ଏହାଙ୍କୁ ରାଜସଭାକୁ ନେଇଯିବା ଦରକାର । ଏହି ଲୋକର କବିତା ମୋର କବିତାଠାରୁ ଅତି ନିକୃଷ୍ଟ ହେବ । ତେଣୁ, ରାଜକବି ହିସାବରେ ମୋର ପ୍ରତିଷ୍ଠା ଆହୁରି ବଢ଼ିଯିବ ।"

ବଲ୍ଲନ କାଳିଦାସଙ୍କୁ ନେଇ ରାଜାଙ୍କ ପାଖରେ ପହଞ୍ଚିଲେ । ସେ ରାଜାଙ୍କୁ କହିଲେ—"ହଜୁର, ଏ ଜଣେ କବି । ବହୁ ଦୂରରୁ ଏଠାକୁ ଆସିଛନ୍ତି । ଆଦେଶ ଦେଲେ ଏହାଙ୍କର କବିତାଟିଏ ଆପଣଙ୍କୁ ଶୁଣାଇବି ।"

ରାଜା ପଢ଼ିବା ପାଇଁ ଆଦେଶ ଦେଲେ । ବଲ୍ଲନ ଯିମିତି ପଢ଼ିବା ପାଇଁ ତାଳପତ୍ର ଉଠାଇଛନ୍ତି, କାଳିଦାସ ତାଙ୍କୁ କହିଲେ—"ରହନ୍ତୁ, ମୁଁ ମହାରାଜାଙ୍କୁ ମୋର କବିତା ଶୁଣାଉଛି । ଆପଣ ନିଜର କବିତା ପଢ଼ି ଶୁଣାଉଛନ୍ତି କାହିଁକି ?"

ଏହା କହି କାଳିଦାସ ଗାଇଲେ –

ବାଣୀ ବିହରନ୍ତି ହରଷେ ତବ ରାଜ୍ୟେ ରାଜନ
ତା ଦେଖି ବିମୁଖୀ କମଳା ଛାଡ଼ିଯିବାକୁ ମନ,
ଗୁଣ ତୁମ ତାଙ୍କୁ ରଖିଲା ବାନ୍ଧି କୀରତି ଡୋରେ
ଚନ୍ଦ୍ରମା ପରିପ୍ରେ ଛୁଟଇ ଦେଖ ଦରିଆ ପାରେ ।

ଭାବାର୍ଥ—ହେ ରାଜା, ଆପଣଙ୍କ ରାଜ୍ୟରେ ସରସ୍ୱତୀ ଆନନ୍ଦରେ ବିହାର କରୁଛନ୍ତି । ସରସ୍ୱତୀ ଲକ୍ଷ୍ମୀଙ୍କର ସଉତୁଣୀ । ସେ ଆନନ୍ଦରେ



[ କର୍ଣ୍ଣାଟ ରାଜାଙ୍କୁ କାଳିଦାସ କବିତା ଶୁଣାଉଛନ୍ତି ]

ବିହାର କରୁଥିବା ଦେଖି ଲକ୍ଷ୍ମୀ ରାଗିଯାଇ ଆପଣଙ୍କ ରାଜ୍ୟ ଛାଡ଼ି ଚାଲିଯିବାକୁ ବସିଥିଲେ । ଏତିକିବେଳେ ଆପଣଙ୍କର ଗୁଣ ଲକ୍ଷ୍ମୀଙ୍କୁ ବାନ୍ଧି ପକାଇ ରାଜ୍ୟରେ ରଖିଦେଲା । ଲକ୍ଷ୍ମୀ ବନ୍ଧାହୋଇଥିବାରୁ ଆପଣଙ୍କର କୀର୍ତ୍ତି ଉଡ଼ିଯାଇ ଚନ୍ଦ୍ରପରି ସମୁଦ୍ର ପାରହୋଇ ଦୂରକୁ ଚାଲିଯାଉଛି ।

ଅର୍ଥାତ୍ – ହେ ରାଜା, ଆପଣ ବିଦ୍ୟାର ଆଦର କରୁଅଛନ୍ତି । ପୁଣି ଆପଣଙ୍କ ରାଜ୍ୟ ଧନଧାନ୍ୟରେ ପୂର୍ଣ୍ଣ ହୋଇଅଛି । ସେଥିପାଇଁ ଦୂର ଦେଶ ବିଦେଶରେ ଆପଣଙ୍କ ନାଁ ବ୍ୟାପିଯାଇଛି ।

କାଳିଦାସଙ୍କ ମୁହଁରୁ ଏ ପ୍ରକାର ଚମତ୍କାର କବିତା ଶୁଣି ବିଲ୍ଲନଙ୍କ ପାଟି ଖନ ବାଜିଗଲା । ରାଜା କାଳିଦାସଙ୍କୁ ଦଶହଜାର ଟଙ୍କା ଏବଂ ଏକ ମୁକ୍ତାର ହାର ପୁରସ୍କାର ଦେଲେ ।

କାଳିଦାସ କର୍ଣ୍ଣାଟରେ ଏକ ସପ୍ତାହ ରହିଲେ । ସେ କଥା ପ୍ରସଙ୍ଗରେ ବିଲ୍ଲନଙ୍କ ଠକାମି କଥା ରାଜାଙ୍କୁ କହିଦେଲେ । ରାଜା ସେହି ଦିନଠାରୁ ବିଲ୍ଲନଙ୍କ କଥାରେ ଆଉ ବିଶ୍ୱାସ କଲେ ନାହିଁ । ଏକ ସପ୍ତାହ ପରେ କାଳିଦାସ ରାଜାଙ୍କଠାରୁ ବିଦାୟ ନେଇ ଧାରାନଗରୀକୁ ଫେରି ଆସିଲେ ।

ଏହିପରି ଠକ ବିଲ୍ଲନ ଠକା ହୋଇଗଲେ ।



# ପାଦ ପୂରଣ

ଥରେ କାଶୀର ତିନିଜଣ ପଣ୍ଡିତ ଦେଶ ଭ୍ରମଣରେ ବାହାରିଲେ । ସେମାନେ ଧୁରନ୍ଧର ପଣ୍ଡିତ ଥିଲେ ଏବଂ ବଡ଼ ବଡ଼ ପଣ୍ଡିତଙ୍କୁ ପରାସ୍ତ କରିଥିଲେ । ଭୋଜଙ୍କ ରାଜସଭାର ନାଁ ଶୁଣି ସେମାନେ ଧାରାନଗରୀକୁ ଆସିଲେ । ରାଜା ସେମାନଙ୍କୁ ଆଦର ଅଭ୍ୟର୍ଥନା କରି ଅତିଥିଭବନରେ ରହାଇଲେ ।

ତା'ପର ଦିନ ରାଜସଭା ବସିଲା । ଚଉଦଶହ ପଣ୍ଡିତଙ୍କ ସହ କାଳିଦାସ ବି ବସିଥାନ୍ତି । ଏତିକବେଳେ କାଶୀର ପଣ୍ଡିତମାନେ ଆସି ପହଞ୍ଚିଲେ । ରାଜା ସେମାନଙ୍କୁ ଉପଯୁକ୍ତ ଆସନ ଦେଲେ । ତା'ପରେ ରାଜା ସେମାନଙ୍କୁ କହିଲେ—"ମୁଁ ଗୋଟିଏ ଶ୍ଳୋକର ଚତୁର୍ଥ ପାଦଟି କହିବି । ଆପଣମାନେ ପ୍ରତ୍ୟେକେ ତାହାର ଅନ୍ୟ ତିନୋଟି ପାଦ ପୂରଣ କରିବେ ।"

ଏହା ପରେ ରାଜା ଚତୁର୍ଥ ପାଦଟି କହିଲେ—

**'କ୍ରିୟା ସିଦ୍ଧିଃ ସତ୍ତ୍ୱେ ଭବତି ମହତାଂ ନୋପକରଣେ'**

ଭାବାନୁବାଦ—

'ବଡ଼ଙ୍କ ସାଧନା ସଫଳ ଦେହେ, ନୁହେଁ ଦରବେ' ।

ଭାବାର୍ଥ—ବଡ଼ ଲୋକଙ୍କର କାର୍ଯ୍ୟସିଦ୍ଧି ନିଜର ଦେହ ଦ୍ୱାରା ହିଁ ହୁଏ, କୌଣସି ଦ୍ରବ୍ୟ ବା ଉପକରଣ ଦ୍ୱାରା ହୁଏ ନାହିଁ ।

ଏହା ଶୁଣି ପ୍ରଥମ ପଣ୍ଡିତ କହିଲେ—

**ଘଟୋଜନ୍ମସ୍ଥାନଂ ମୃଗ ପରିଜନୋ ଭୂର୍ଜବସନଂ**
**ବନେ ବାସଃ କନ୍ଦାଦ୍ୟକମଶନମେବଂବିଧ ଗୁଣଃ ।**

**ଅଗସ୍ତ୍ୟଃ ପାଥୋଧିଂ ଯଦ୍‌କୃତ କରାମ୍ଭୋଜ କୁହରେ**
**କ୍ରିୟାସିଦ୍ଧିଃ ସତ୍ତ୍ୱେ ଭବତି ମହତାଂ ନୋପକରଣେ ।**

ଭାବାନୁବାଦ—

ମାଟି ମାଠିଆରୁ ଜନମ ମୃଗ କୁଟୁମ୍ବ ଯାର,
ବକଳ ବସନ ବନରେ ବାସ କନ୍ଦ ଆହାର,
ଚୂଳୁକେ ଶୋଷିଲେ ସାଗର ଜଳ ଅଗସ୍ତି ଯେବେ
ବଡ଼ଙ୍କ ସାଧନା ସଫଳ ଦେହ ନୁହେଁ ଦରବେ ।

ଭାବାର୍ଥ—ଅଗସ୍ତି ଋଷି ମାଟି ମାଠିଆରୁ ଜନ୍ମ ହୋଇଥିଲେ । ହରିଣ ହରିଣୀ ହିଁ ତାଙ୍କର ପରିବାର ଥିଲେ । ସେ ବଣରେ ରହି, ଗଛର ବକଳ ପିନ୍ଧି, କନ୍ଦମୂଳ ଖାଇ କାଳ କଟାଉଥାନ୍ତି । ତଥାପି ସେ ଥରେ ସାତ ସମୁଦ୍ରର ପାଣି ଚଳୁ କରି ଦେଇଥିଲେ । ଏଥିରୁ ଜଣାଯାଏ ଯେ, ବଡ଼ ଲୋକଙ୍କର କାର୍ଯ୍ୟସିଦ୍ଧି କୌଣସି ଜିନିଷ ବା ଉପକରଣରୁ ହୁଏ ନାହିଁ, ସେମାନଙ୍କ ଦେହ ଦ୍ୱାରା ହିଁ ହୁଏ—

ଏହାପରେ ବିମ୍ବୁ ପଣ୍ଡିତ କହିଲେ—

**ରଥସ୍ୟୈକଂ ଚକ୍ରଂ ଭୁଜଗଯମିତାଃ ସପ୍ତ ତୁରଗା**
**ନିରାଲମ୍ବୋ ମାର୍ଗଶ୍ଚରଣବିକଳଃ ସାରଥିରପି ।**
**ରବିର୍ଯାତ୍ୟେବାନ୍ତଂ ପ୍ରତିଦିନମପାରସ୍ୟ ନଭସଃ**
**କ୍ରିୟାସିଦ୍ଧିଃ ସତ୍ତ୍ୱେ ଭବତି ମହତାଂ ନୋପକରଣେ ॥**

ଭାବାନୁବାଦ —

ଚକ ଏକ ରଥେ ସାତଟି ଘୋଡ଼ା ସାପ ପର୍ଯ୍ୟାଣ
ଅସରନ୍ତି ପଥ ଆଗରେ, ଠୁଣ୍ଟା ସାରଥି ମୁଣ୍ଡ,
ନିତି ଥରେ ଘୂରି ଆସନ୍ତି ରବି ଆକାଶେ ଯେବେ
ବଡ଼ଙ୍କ ସାଧନା ସଫଳ ଦେହେ, ନୁହେଁ ଦରବେ ।

ଭାବାର୍ଥ – ସୂର୍ଯ୍ୟଙ୍କ ରଥରେ ଚକ ମାତ୍ର ଗୋଟାଏ । ସେଥିରେ ସାତଟି ଘୋଡ଼ା ଯୋଚି ହୋଇଛନ୍ତି । ସାପମାନେ ଘୋଡ଼ାର ଲଗାମ



[ରଜା ଭୋଜଙ୍କ ସଭାରେ କାଶୀ ପଣ୍ଡିତମାନଙ୍କ ସହିତ କାଳିଦାସ]

ହୋଇଛନ୍ତି । ତେଣୁ ଘୋଡ଼ାମାନେ ସାପମାନଙ୍କ ଅଧୀନରେ ଅଛନ୍ତି ।

ଖାଲି ସେତିକି ନୁହେଁ, ସୂର୍ଯ୍ୟଙ୍କୁ ପ୍ରତିଦିନ ଅପାର ଆକାଶରେ ଅପରନ୍ତ ବାଟ ଯିବାକୁ ହୁଏ । ସେଥିରେ ପୁଣି ତାଙ୍କର ସାରଥି ଛୋଟା । ଏସବୁ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ସୂର୍ଯ୍ୟ ତାଙ୍କ ରଥରେ ବସି ପ୍ରତିଦିନ ଆକାଶରେ ଥରେ ଘୂରିଆସନ୍ତି । ଏଥିରୁ ଜଣାଯାଏ ଯେ, ନିଜର ଦେହ ଦ୍ୱାରା ହିଁ ବଡ଼ଲୋକଙ୍କର କାର୍ଯ୍ୟ ସିଦ୍ଧ ହୁଏ, କିନ୍ତୁ କୌଣସି ଜିନିଷ ବା ଉପକରଣ ଦ୍ୱାରା ନୁହେଁ ।

ଏହାପରେ ଭବଭୂତି ପଣ୍ଡିତ କହିଲେ —

**ନ ଜେତବ୍ୟା ଲଙ୍କା ଚରଣତରଣୀୟୋ ଜଲନିଧି-**
**ର୍ବିପକ୍ଷଃ ପୌଲସ୍ତ୍ୟୋ ରଣଭୁବି ସହାୟାଶ୍ଚ କପୟଃ ।**
**ପଦାତିର୍ମର୍ତ୍ତ୍ୟୋଽସୌ ସକଲମବଧୀଦ୍ରାକ୍ଷସକୁଳଂ**
**କ୍ରିୟାସିଦ୍ଧିଃ ସତ୍ତ୍ୱେ ଭବତି ମହତାଂ ନୋପକରଣେ ॥**

ପଦ୍ୟାନୁବାଦ —

ଲଙ୍କାକୁ ଜିଣିବା, ପାଦରେ ପାରି ହେବା ସାଗର,
ରାବଣ ହୋଇବା ବଇରି, ରଣେ ସାହା ବାନର ।
ନର ହୋଇ ରାମ ନାଶିଲେ ସବୁ ଅସୁର ଯେବେ,
ବଡ଼ଙ୍କ ସାଧନା ସଫଳ ଦେହେ, ନୁହେଁ ଦରବେ ।

ଭାବାର୍ଥ — ଲଙ୍କା ଜିଣିବା ଯୋଗ୍ୟ ନଥିଲା । ପାଦରେ ସମୁଦ୍ର ପାରିହେବା ବି ସହଜ କଥା ନୁହେଁ । ଲଙ୍କାର ରାଜା ରାବଣ ଅଯୋଧ୍ୟାର ରାଜା ରାମଙ୍କର ଶତ୍ରୁ ହେବା ବି ବଡ଼ ଆଶ୍ଚର୍ଯ୍ୟର କଥା । ପୁଣି ରାମଚନ୍ଦ୍ରଙ୍କ ପକ୍ଷରେ ମାଙ୍କଡ଼ମାନେ ଯୁଦ୍ଧ କରିଥିଲେ । ଏ ବି କମ୍ ଆଶ୍ଚର୍ଯ୍ୟର କଥା ନୁହେଁ । ରାମଚନ୍ଦ୍ର ମନୁଷ୍ୟ ହୋଇ ମଧ୍ୟ ସବୁ ଅସୁରଙ୍କୁ ମାରିଦେଇଥିଲେ । ଏଥିରୁ ଜଣାଯାଏ ଯେ, କୌଣସି ଜିନିଷ ବା ଉପକରଣ ଦ୍ୱାରା ବଡ଼ଲୋକଙ୍କ କାର୍ଯ୍ୟସିଦ୍ଧି ହୁଏ ନାହିଁ, ସେମାନଙ୍କ ଦେହ ଦ୍ୱାରା ହିଁ ହୁଏ ।

ଶେଷରେ ରାଜା କାଳିଦାସଙ୍କ ଆଡ଼େ ଚାହିଁ କହିଲେ – "କାଳିଦାସ, ବର୍ତ୍ତମାନ ତୁମର ପାଳି । ଗୋଟାଏ ଶ୍ଳୋକ ଶୁଣାଅ ।"

ତହୁଁ କାଳିଦାସ କହିଲେ—

**ଧନୁଃ ପୌଷ୍ପଂ ମୌର୍ବୀ ମଧୁକରମୟୀ ଚଞ୍ଚଳଦୃଶାଂ**
**ଦୃଶାଂ କୋଣୋ ବାଣଃ ସୁହୃଦପି ଜଡାତ୍ମା ହିମକରଃ ।**
**ସ୍ୱୟଂ ଚୈକୋଽନଙ୍ଗଃ ସକଳ ଭୁବନଂ ବ୍ୟାକୁଳୟତି**
**କ୍ରିୟାସିଦ୍ଧିଃ ସତ୍ତ୍ୱେ ଭବତି ମହତାଂ ନୋପକରଣେ ॥**

ଭାବାନୁବାଦ—

ଶର ଫୁଲମାନ ଗୋଟିଏ, ଡୋର ତା'ର ଭଉଁର,
ନାରୀ ଆଖି କୋଣ ବାଣ ତା' ଚନ୍ଦ୍ର ବନ୍ଧୁ ଜଡ଼ର ।
ଅଙ୍ଗ ନାହିଁ ତା'ର ଅନଙ୍ଗ ଜିଣେ ଜଗତ ଯେତେ,
ବଡ଼ଙ୍କ ସାଧନା ସଫଳ ହୋଇନ୍ତି, ନୁହେଁ ସରବେ ।

ଭାବାର୍ଥ—ଶର ହିସାବରେ ତା'ର ନାଁ ଅଛି; କେବଳ ହାତରେ ଧରିଥାଏ ଗୋଟାଏ ଫୁଲର ଧନୁ । ଭଉଁର ହିଁ ସେହି ଧନୁର ଗୁଣ । ଯୁବତୀ ଆଖି କୋଣ ତା'ର ବାଣ । ଜଡ଼ ଚନ୍ଦ୍ର ତା'ର ବନ୍ଧୁ । ତା'ର ଅଙ୍ଗ ବା ଦେହ ନାହିଁ । ତା' ନାଁ ସେଥିପାଇଁ ଅନଙ୍ଗ (କନ୍ଦର୍ପ) । ସେସବୁ ସତ୍ତ୍ୱେ ଅନଙ୍ଗ ସାରା ଦୁନିଆକୁ ଜିଣିପାରେ । ଏଥିରୁ ଜଣାଯାଏ ଯେ, କୌଣସି ଜିନିଷ ବା ଉପକରଣ ଦ୍ୱାରା ବଡ଼ଲୋକମାନେ ନିଜର କାର୍ଯ୍ୟସିଦ୍ଧି କରିପାରନ୍ତି ନାହିଁ, ନିଜର ଶକ୍ତିର ଦ୍ୱାରା ହିଁ କରନ୍ତି ।

କାଶ୍ମୀର ତିନି ପଣ୍ଡିତଙ୍କ ଶ୍ଲୋକ ଶୁଣି ଭୋଜ ଭାରି ସନ୍ତୁଷ୍ଟ ହୋଇଥିଲେ । ଶେଷରେ କାଳିଦାସଙ୍କ ଶ୍ଲୋକ ଶୁଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ କାଶ୍ମୀର ପଣ୍ଡିତମାନଙ୍କୁ ବହୁ ଧନରତ୍ନ ଦେଇ ବିଦା କଲେ । ସେ କାଳିଦାସଙ୍କୁ ମଧ୍ୟ ବହୁତ ପୁରସ୍କାର ଦେଲେ ।

—୦—